॥ ଶ୍ରୀହରିଃ ॥

1614 ▲

# ଶିକ୍ଷାପ୍ରଦ

# ଏଗାରଟି କାହାଣୀ

शिक्षाप्रद ग्यारह कहानियाँ ( ओड़िआ )

B. K. Mitra




ଜୟଦୟାଲ ଗୋୟନ୍ଦକା



ଜୟଦୟାଲ ଗୋୟନ୍ଦକା

(ଜନ୍ମ: ୧୮୮୫ - ମୃତ୍ୟୁ: ୧୭ ଏପ୍ରିଲ ୧୯୬୫)

॥ ଶ୍ରୀହରିଃ ॥

1614

# ଶିକ୍ଷାପ୍ରଦ

# ଏଗାରଟି କାହାଣୀ

**शिक्षाप्रद ग्यारह कहानियाँ ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥


ମୂଳହିନ୍ଦୀ ଜୟଦୟାଲ ଗୋୟନ୍ଦକା
ଭାଷାନ୍ତର ରାମଚନ୍ଦ୍ର ପଣ୍ଡା
ସମ୍ପାଦନା ସ୍ୱାମୀ ଶ୍ରଦ୍ଧାସ୍ୱରୂପାନନ୍ଦ

ଶ୍ରୀହରିଃ

# ନିବେଦନ

ଆମର ପାଠକବୃନ୍ଦ ପୂଜ୍ୟ ଶ୍ରୀଜୟଦୟାଲଜୀ ଗୋୟନ୍ଦକାଙ୍କ ସହ ଭଲଭାବରେ ପରିଚିତ । ଏହି ପୁସ୍ତକରେ ତାଙ୍କ ଲିଖିତ ''ଶିକ୍ଷାପ୍ରଦ ଏଗାରଟି କାହାଣୀ'' ପ୍ରକାଶିତ ହୋଇଛି । 'କଲ୍ୟାଣ'ରେ ଏସବୁ ବିଭିନ୍ନ ସମୟରେ ପ୍ରକାଶିତ ହୋଇସାରିଛି । ଏହି କାହାଣୀଗୁଡ଼ିକ ଯେଉଁମାନେ କେବଳ କଳାପ୍ରେମୀ, ସେମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ; ସେମାନଙ୍କୁ ହୁଏତ ଏହି କାହାଣୀଗୁଡ଼ିକ ନୈରାଶ୍ୟଜନକ ବୋଧ ହୋଇପାରେ; କିନ୍ତୁ ଯେଉଁ ଗୃହସ୍ଥ ଓ ସାଧକ ନିଜର ଲୌକିକ ଓ ପାରଲୌକିକ ଉନ୍ନତି ଇଚ୍ଛା କରନ୍ତି ଏବଂ ଯେଉଁମାନେ ପରମାର୍ଥପଥର ପଥିକ, ସରଳ ଭାଷାରେ ଲିଖିତ ଏହି ସୁନ୍ଦର କାହାଣୀଗୁଡ଼ିକ ସେମାନଙ୍କ ପକ୍ଷରେ ଅତି ଉପାଦେୟ ତଥା ଆଦର୍ଶଣୀୟ ହୋଇପାରିବ । ମୋର ହାର୍ଦ୍ଦିକ ପ୍ରାର୍ଥନା, ଏହି କାହାଣୀଗୁଡ଼ିକ ଦ୍ୱାରା ସମସ୍ତେ ଉପକୃତ ହୁଅନ୍ତୁ ।

ପ୍ରାର୍ଥୀ

ହନୁମାନ ପ୍ରସାଦ ପୋଦ୍ଦାର

ଶ୍ରୀହରିଃ

# ସୂଚୀପତ୍ର





॥ ଶ୍ରୀପରମାତ୍ମନେ ନମଃ ॥

# ଶିକ୍ଷାପ୍ରଦ ଏଗାରଟି କାହାଣୀ

## ୧. ଯୋଗକ୍ଷେମ ବହନ

*ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।*
*ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥*

*(ଗୀତା ୯ ।୨୨)*

"ଯେଉଁ ଅନନ୍ୟପ୍ରେମୀ ଭକ୍ତଜନମାନେ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ନିରନ୍ତର ଚିନ୍ତନପୂର୍ବକ ନିଷ୍କାମଭାବରେ ଭଜନ କରନ୍ତି, ନିତ୍ୟନିରନ୍ତର ମୋର ଚିନ୍ତନ କରୁଥିବା ସେହି ପୁରୁଷମାନଙ୍କର ଯୋଗକ୍ଷେମ ମୁଁ ସ୍ୱୟଂ ବହନ କରେ ।"

କେହି କେହି ଏହି ଶ୍ଳୋକର ଅର୍ଥ କରି କହିଥାନ୍ତି ଯେ, ସାଧକ ସଂପୂର୍ଣ୍ଣରୂପେ ନିଷ୍କାମ ଓ ନିବୃତ୍ତିମୂଳକ ହୋଇଯାଇ, ସଂସାରନିର୍ବାହ ପ୍ରତି କୌଣସି ଚିନ୍ତା ନ କରି, କେବଳ ଭଗବାନଙ୍କ ଉପରେ ନିର୍ଭର କରି ଭଜନରତ ରହିବା ଉଚିତ । ଏ ବିଷୟରେ ସେମାନେ ନିମ୍ନଲିଖିତ ଦୃଷ୍ଟାନ୍ତ ଦେଇଥାନ୍ତି ।

ଜଣେ ନିବୃତ୍ତିପ୍ରିୟ ଈଶ୍ୱରଭକ୍ତ ବ୍ରାହ୍ମଣ ଥିଲେ । ସେ ନିୟମିତ ଗୀତାଭ୍ୟାସ କରୁଥିଲେ । ସେ ଶ୍ଳୋକର ଅର୍ଥ ଭଲରୂପେ ହୃଦୟଙ୍ଗମ କରି ବାରମ୍ବାର ସଂପୂର୍ଣ୍ଣ ଗୀତା ଅଧ୍ୟୟନ କରୁଥିଲେ ଏବଂ ଭଗବାନଙ୍କ ନାମଜପ ତଥା ତାଙ୍କ ସ୍ୱରୂପ ଧ୍ୟାନ କରିବାରେ ହିଁ ନିଜର ସମସ୍ତ ସମୟ କଟାଇ ଦେଉଥିଲେ । ସେ ଏକମାତ୍ର ଭଗବାନଙ୍କ ଉପରେ ନିର୍ଭର କରୁଥିଲେ । ଜୀବିକାନିର୍ବାହ କଥା ବା କ'ଣ କହିବା, ସେ ନିଜ ଖାଦ୍ୟପେୟର ଚିନ୍ତା ମଧ୍ୟ କରୁ ନ ଥିଲେ । ତାଙ୍କର ପିତା-ମାତା ଇହଧାମ ତ୍ୟାଗ କରି ପରଲୋକ ଗମନ କରିସାରିଥାନ୍ତି । ସେମାନେ ତିନି ଭାଇ; ସମସ୍ତେ ବିବାହିତ । ତିନି ଭାଇଙ୍କ ମଧ୍ୟରେ ଏହି ସଜ୍ଜନ ଜଣକ ଥିଲେ ବୟସରେ ସମସ୍ତଙ୍କ ଠାରୁ ବଡ଼ । ସାନ ଭାଇ ଦୁଇଜଣଯାକ ପୁରୋହିତ କର୍ମ କରି ଘର ଚଳାଉଥାନ୍ତି । ଦିନକର କଥା; ସାନ ଭାଇ ବଡ଼ ଭାଇଙ୍କୁ କହିଲେ, "ଆପଣ ଯଦି ଘର ଚଳାଇବା ପାଇଁ କିଛି ସମୟ ଦେଇପାରନ୍ତେ; ଭଲ ହୁଅନ୍ତା ।" ବଡ଼ ଭାଇ

କହିଲେ, ‘‘ପୃଥିବୀର ସମସ୍ତଙ୍କର ଭରଣପୋଷଣ କରୁଥିବା ଭଗବାନ୍ ବିଶ୍ୱମ୍ଭର ସଦା ସର୍ବତ୍ର ବିଦ୍ୟମାନ ରହିଛନ୍ତି; ତେଣୁ ନିଜ ଜୀବିକାନିର୍ବାହ ନିମନ୍ତେ ଚିନ୍ତିତ ହେବା ନିପଟ ପିଲାଳିଆ କଥା । ଭଗବାନ୍ ଗୀତାର ନବମ ଅଧ୍ୟାୟ ବାଇଶିତମ ଶ୍ଳୋକରେ କହିଛନ୍ତି ଯେ, ନିତ୍ୟ-ନିରନ୍ତର ତାଙ୍କର ଚିନ୍ତନ କରୁଥିବା ଅନନ୍ୟପ୍ରେମୀ ଭକ୍ତଙ୍କର ଯୋଗକ୍ଷେମ ସେ ସ୍ୱୟଂ ବହନ କରିବାର ଦାୟିତ୍ୱ ନେଇଥାଆନ୍ତି ।

*ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।*
*ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥*

‘‘ଏଣୁ ଭାଇ ! ଆମେ ତ କେବଳ ଭଗବାନଙ୍କ ଉପରେ ନିର୍ଭର କରିବା ଉଚିତ । ସେ ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି କ୍ଷୁଦ୍ରାତିକ୍ଷୁଦ୍ର କୀଟ ପର୍ଯ୍ୟନ୍ତ, ଅଣୁ-ପରମାଣୁ ପର୍ଯ୍ୟନ୍ତ ସମସ୍ତଙ୍କର ଭରଣ-ପୋଷଣ କରନ୍ତି । ପୁଣି, ଯେ ତାଙ୍କ ଠାରେ ଭରସା ରଖି, ତାଙ୍କ ଉପରେ ନିର୍ଭର କରି ନିତ୍ୟ-ନିରନ୍ତର ତାଙ୍କର ସ୍ମରଣ-ଚିନ୍ତନ କରନ୍ତି, ତାଙ୍କର ଯୋଗକ୍ଷେମ ବହନ କରିବାକୁ ତ ସେ ପ୍ରତିଜ୍ଞାବଦ୍ଧ । ତେଣୁ ସେ ନିରନ୍ତର ଗୀତା ଅଧ୍ୟୟନ-ଅଧ୍ୟାପନ ଓ ସତତ ଶ୍ରଦ୍ଧା-ପ୍ରେମପୂର୍ବକ ଭଗବାନଙ୍କର ଭଜନ-ସ୍ମରଣ କରିବା ଏକାନ୍ତ ଆବଶ୍ୟକ ।’’

ସାନ ଦୁଇଭାଇ କହିଲେ, ‘‘ଭାଇନା ! ଆପଣ ଯାହା କହିଲେ, ତାହା ଠିକ୍; କିନ୍ତୁ ଜୀବିକାନିର୍ବାହ ପାଇଁ କୌଣସି ଉଦ୍ୟମ ନ କରି ଖାଲି ଘରେ ବସି ରହିଲେ ଭଗବାନ୍ ତ କାହାକୁ କିଛି ଆଣି ଦେଇଯିବେ ନାହିଁ ।’’ ବଡ଼ଭାଇ ଦୃଢ଼ ବିଶ୍ୱାସର ସହିତ କହିଲେ, ‘‘ଯଦି ପରମ ଶ୍ରଦ୍ଧା ଓ ଗଭୀର ବିଶ୍ୱାସ ରହିଥିବ, ତେବେ ଘରେ ବସି ରହିଥିଲେ ମଧ୍ୟ ଭଗବାନ୍ ଭକ୍ତଙ୍କ ଚଳିବା ନିମନ୍ତେ କୌଣସି ନା କୌଣସି ପ୍ରକାରେ କିଛି ଦେବାର ବ୍ୟବସ୍ଥା କରିଥାନ୍ତି ।’’ ସାନ ଦୁଇଭାଇ ଟିକିଏ ବିରକ୍ତି ପ୍ରକାଶ କରି କହିଲେ, ‘‘ ଭାଇନା ! କହିବା ତ ବଡ଼ ସହଜ । ଆମେ ରୋଜଗାର କରି ଆଣୁଥିବାରୁ ଘରକାମ ଚଳିଯାଉଛି । ଆପଣ କେବଳ ଖାଲିଟାରେ ବସି ବସି ଶ୍ଳୋକ ପଢ଼ିବା ଓ ବଡ଼ ବଡ଼ କଥା କହିବା ଜାଣିଛନ୍ତି । ଆମେ କେତେ ପରିଶ୍ରମ କରି ଘର ଚଳାଇବାକୁ ରୋଜଗାର କରି ଆଣୁଛୁ, ତାହା ଆପଣଙ୍କୁ ଜଣା ନାହିଁ । ଆପଣ ଯେତେବେଳେ ଆମଠାରୁ ଅଲଗା ହୋଇ ଘର ଚଳାଇବେ, ସେତେବେଳେ ଜୀବିକାନିର୍ବାହ ନିମନ୍ତେ କୌଣସି ଚେଷ୍ଟା ନ କରି ମଧ୍ୟ ଆପଣଙ୍କ ଘରକାମ କିପରି ଚଳିଯିବ, ତାହା ଜଣାପଡ଼ିବ ।’’ ବଡ଼ଭାଇ ଧୈର୍ଯ୍ୟପୂର୍ବକ କହିଲେ, ‘‘ଭାଇ ! ତୁମେ ଯଦି ଏହା ଉଚିତ ମନେ କରୁଛ,

ତେବେ ବଡ଼ ଆନନ୍ଦର କଥା; ମୋତେ ଅଲଗା କରିଦିଅ । ମୁଁ କାହା ଉପରେ ବୋଝ ହୋଇ ରହିବାକୁ ଭଲ ପାଏନା । ଭଗବାନ୍ କିପରିଭାବରେ ମୋତେ ଚଳାଇବେ, ତାହା ସେ ଭଲରୂପେ ଜାଣନ୍ତି ।'' ଏହା ଶୁଣି ଦୁଇ ସାନଭାଇ ନିଶ୍ଚିନ୍ତ ହୋଇ କହିଲେ, ''ଖୁବ୍ ଭଲ କଥା । ଆସନ୍ତାକାଲି ନିଜ ନିଜ ଭାଗ ଅନୁସାରେ ସବୁଜିନିଷ ବଣ୍ଟାକୁଣ୍ଟା କରିନେବା ।'' ବଡ଼ ଭାଇ କହିଲେ, ''ତୁମ୍ଭେମାନେ ଯାହା ଉଚିତ ମନେକରୁଛ, ସେପରି କର; ମୋର ସେଥିରେ କୌଣସି ଆପତ୍ତି ନାହିଁ । ତୁମ୍ଭେମାନେ ଯେଉଁଥିରେ ରାଜି, ମୁଁ ବି ସେଥିରେ ରାଜି ।''

ତା'ପରଦିନ ସାନ ଦୁଇଭାଇ ଯାହାକିଛି ଜିନିଷ ଓ ଧନସଂପତ୍ତି ଥିଲା, ସେସବୁ ତିନିଭାଗ କରିଦେଲେ । ଭକ୍ତ ବ୍ରାହ୍ମଣଙ୍କ ଭାଗରେ ଗୋଟିଏ ଛୋଟ ଗୃହଘର, କିଛି ନଗଦ ଟଙ୍କା, ସାମାନ୍ୟ କିଛି ଗହଣାଗାଣ୍ଠି, ଲୁଗାପଟା ଓ ରୋଷାଇ ସରଞ୍ଜାମ-ବାସନକୁସନ ଆଦି ପଡ଼ିଲା । ତା'ଛଡ଼ା କିଛି ଯଜମାନବୃତ୍ତି ମଧ୍ୟ ଭାଗ ମୁତାବକ ତାଙ୍କୁ ଦିଆଗଲା । ଯଜମାନମାନେ ଏପରି ଯେ, ସେମାନେ ପୁରୋହିତ ମହାଶୟଙ୍କୁ ନିଜ ନିଜ ଘରକୁ ଆସିବାପାଇଁ କେବେ ଲୋଡ଼ୁ ନ ଥିଲେ; କିନ୍ତୁ ଯଦି କୌଣସି ପୁରୋହିତ ସେମାନଙ୍କ ପାଖରେ ପହଞ୍ଚିଯାଆନ୍ତି, ତେବେ ସେମାନଙ୍କ ଠାରୁ କିଛି ନେଇଆସନ୍ତି ।

ଏହିପରିଭାବରେ ଯେତେବେଳେ ତିନିଭାଇ ଅଲଗା ଅଲଗା ହୋଇଗଲେ, ସେହି ବ୍ରାହ୍ମଣ ଭକ୍ତ ତାଙ୍କ ଧର୍ମପତ୍ନୀଙ୍କୁ କହିଲେ, ''ମୋ ଭାଇମାନେ ମୋତେ ଯାହାକିଛି ଦେଲେ, ତାହା ଅତ୍ୟନ୍ତ ସନ୍ତୋଷଜନକ; କିନ୍ତୁ ଆମେ ବର୍ତ୍ତମାନ ମନେ ରଖିବା ଉଚିତ ଯେ, ଆମେ କେବଳ ଭଗବାନଙ୍କ ଉପରେ ନିର୍ଭର କରି ଚଳିବା । ଆମେ କାହା ଘରକୁ ଯାଇ କେବେ ବି କୌଣସି ଜିନିଷ ମାଗିବା ନାହିଁ ଏବଂ କେହି କିଛି ଦେଲେ ମଧ୍ୟ ଆମେ କାହାଠାରୁ କିଛି ନେବା ନାହିଁ । ଭଗବାନ୍ ସ୍ୱୟଂ ଯୋଗକ୍ଷେମ ବହନ କରନ୍ତି; ସେ ହିଁ ଆମର ଯୋଗକ୍ଷେମ ବହନ କରିବେ; ଆମକୁ ଚଳାଇବେ । ଭାଇମାନେ ଯାହାକିଛି ଦେଇଛନ୍ତି, ବର୍ତ୍ତମାନ ତ ସେଥିରେ ହିଁ ଆମ ଗୁଜୁରାଣ ମେଣ୍ଟାଇବାକୁ ହେବ ।''

ବ୍ରାହ୍ମଣୀ ମଧ୍ୟ ଈଶ୍ୱରଭକ୍ତ ଓ ପତିବ୍ରତା ଥିଲେ । ସେ ନିଜ ସ୍ୱାମୀଙ୍କ କଥାକୁ ବଡ଼ ଆଦର ଓ ସମ୍ମାନପୂର୍ବକ ଗ୍ରହଣ କଲେ । ସେ ଭାବିଲେ, ''ବର୍ତ୍ତମାନ ତ ଚଳିଯିବାକୁ ଆମ ପାଖରେ କିଛି ରହିଛି । ଏତକ ସରିଗଲେ ସ୍ୱାମୀ ଯାହା ଉଚିତ ମନେ କରିବେ, ସେ ନିଜେ ହିଁ ତା'ର ବ୍ୟବସ୍ଥା କରିବେ ।''

ସେହି ଭଗବଦ୍‌ଭକ୍ତ ବ୍ରାହ୍ମଣ ପ୍ରତିଦିନ ଭୋର ଚାରିଟାରେ ଉଠନ୍ତି ଏବଂ ସହରରୁ ମାଇଲିଏ ଦୂରରେ ଥିବା ଗୋଟିଏ ପୋଖରୀକୁ ଯାଇ ସେଠାରେ ଶୌଚ-ସ୍ନାନ କରନ୍ତି । ତା'ପରେ ସନ୍ଧ୍ୟା-ଉପାସନା ସାରି, ଭଗବାନଙ୍କର ମାନସପୂଜା, ଜପ, ଧ୍ୟାନ ଓ ଭାବର ସହିତ ଅର୍ଥ ହୃଦୟଙ୍ଗମ କରି ସଂପୂର୍ଣ୍ଣ ଗୀତା ଅଧ୍ୟୟନ କରନ୍ତି । ତା'ପରେ ଦିନ ଏଗାରଟାବେଳେ ଘରକୁ ଫେରି ଭୋଜନ ଗ୍ରହଣ କରନ୍ତି । ଭୋଜନ କରିସାରିବା ପରେ ପୁଣି ଦ୍ୱିପ୍ରହର ଗୋଟାଏବେଳେ ସେହି ପୋଖରୀ ନିକଟକୁ ଯାଇ ଜପ, ଧ୍ୟାନ ଓ ସ୍ୱାଧ୍ୟାୟ କରନ୍ତି । ପୁଣି ସନ୍ଧ୍ୟା ଚାରିଟାବେଳେ ଶୌଚ-ସ୍ନାନ ଶେଷ କରି ସନ୍ଧ୍ୟା-ଉପାସନା କରନ୍ତି । ତା'ପରେ ମାନସ-ପୂଜା କରି ଶ୍ରଦ୍ଧାପୂର୍ବକ ସତ୍‌ଶାସ୍ତ୍ର ସ୍ୱାଧ୍ୟାୟ କରନ୍ତି । ସୂର୍ଯ୍ୟାସ୍ତ ପରେ ଭଗବାନଙ୍କର ନାମଜପ ଓ ତାଙ୍କର ସ୍ୱରୂପ ଧ୍ୟାନ କରନ୍ତି । ଶେଷରେ ରାତି ଆଠଟା ପରେ ଘରକୁ ଫେରି ଭୋଜନ କରନ୍ତି ଏବଂ ନିଜ ଧର୍ମପତ୍ନୀଙ୍କ ସହିତ ସଦାଳାପ କରି ଦଶଟାବେଳେ ଶୟନ କରନ୍ତି । ତାଙ୍କର ଧର୍ମପତ୍ନୀ ମଧ୍ୟ ଦୁଇବେଳା ସ୍ୱାମୀଙ୍କୁ ଖାଇବାକୁ ଦେଇ ନିଜେ ଖାଆନ୍ତି । ସେ ପ୍ରତିଦିନ ସ୍ୱାମୀଙ୍କୁ ନମସ୍କାର କରିବାକୁ, ତାଙ୍କର ସେବା-ଶୁଶ୍ରୂଷା କରିବାକୁ, ତାଙ୍କ ଆଜ୍ଞା ପାଳନ କରିବାକୁ ତଥା ଈଶ୍ୱରଙ୍କ ଭଜନ-ଧ୍ୟାନ କରିବାକୁ ନିଜର ପରମ କର୍ତ୍ତବ୍ୟ ମଣୁଥିଲେ । ଏପରିଭାବରେ ଉଭୟଙ୍କର ସମୟ ଅତିବାହିତ ହେଉଥିଲା । ପ୍ରତିଦିନ ଖର୍ଚ୍ଚ ତ ହେଉଥିଲା ; କାଳକ୍ରମେ ତାଙ୍କ ପାଖରେ ଯାହାକିଛି ଟଙ୍କାପଇସା ଥିଲା, ସବୁ ସରିଗଲା । ପତ୍ନୀ ସ୍ୱାମୀଙ୍କୁ କହିଲେ, "ଟଙ୍କାପଇସା ତ ସବୁ ସରିଗଲା ।" ସ୍ୱାମୀ ପଚାରିଲେ, "କ'ଣ ଗହଣାଗାଣ୍ଠି ଓ ଲୁଗାପଟା ବି ସରିଗଲା ?" ପତ୍ନୀ କହିଲେ, "ନାହିଁ; ସେସବୁ ଅଛି ।" ବ୍ରାହ୍ମଣୀ ବିଚାର କଲେ, ଗହଣା ଓ ଲୁଗାପଟା ବିକି କାମ ଚଳାଇବାକୁ ସ୍ୱାମୀ ରାଜି ଅଛନ୍ତି । ଏଣୁ ସେ ଗହଣା ଓ ଲୁଗାପଟା ବିକ୍ରି କରି ଘରକାମ ଚଳାଇବାକୁ ଲାଗିଲେ । କିନ୍ତୁ ଗହଣା ଓ ଲୁଗାପଟା ବି ସମୟକ୍ରମେ ଶେଷ ହୋଇଗଲା । ଆଉ ଦିନେ ପତ୍ନୀ କହିଲେ, "ଯାହାକିଛି ଗହଣା ଓ ଲୁଗାପଟା ଥିଲା, ସବୁ ସରିଗଲା ।" ସ୍ୱାମୀ କହିଲେ, "କିଛି ଚିନ୍ତା ନାହିଁ; ବର୍ତ୍ତମାନ ବାସନ-କୁସନ ଓ ଘର ତ ଅଛି ।" ଏଥିରୁ ବ୍ରାହ୍ମଣୀ ଠଉରାଇନେଲେ ଯେ, ସ୍ୱାମୀ ଘର ଓ ବାସନକୁସନ ବିକ୍ରି କରି କାମ ଚଳାଇବାକୁ ଚାହାଁନ୍ତି । ସେ ଖୁସିରେ ଘର ବିକ୍ରି କରିଦେଲେ ଏବଂ ଅନ୍ୟ ଘର ଭଡ଼ା ନେଇ ରହିଲେ । ସେଥିରେ କିଛିଦିନ କାମ ଚଳିଗଲା । ତା'ପରେ ବାସନକୁସନ ବିକ୍ରି କରିଦେଲେ । କିନ୍ତୁ ସେଥିରେ ବା

କେତେଦିନ ଚଳିବେ ! ତାହା ତ ସମୁଦ୍ରକୁ ଶଙ୍ଖେ ପାଣି ପରି— କିଛି ନୁହେଁ କହିଲେ ଚଳେ । ଶେଷରେ ବ୍ରାହ୍ମଣୀଙ୍କ ପାଖରେ ଲଜ୍ଜାନିବାରଣ ପାଇଁ କେବଳ ଖଣ୍ଡିଏ ଶାଢ଼ି ଓ ବ୍ରାହ୍ମଣ ଦେବତାଙ୍କ ପାଇଁ କେବଳ ଖଣ୍ଡିଏ ଧୋତି ଓ ଗୋଟିଏ ଗାମୁଛା ରହିଥାଏ । ଦିନେ ବ୍ରାହ୍ମଣ ଭୋର ଚାରିଟାବେଳେ ପୋଖରୀକୁ ବାହାରିବା ସମୟରେ ପତ୍ନୀ ବଡ଼ ବିନୀତଭାବରେ ହାତ ଯୋଡ଼ି କହିଲେ, ''ଏଥର ସବୁକିଛି ସରିଗଲା । ଘରଖର୍ଚ୍ଚ ଚଳାଇବାକୁ ଆଉ କେଉଁଠି କିଛି ନାହିଁ । ଆମେ ତ ଭଡ଼ାଘରେ ରହୁଛେ । ବାସନ-କୁସନ ବି ସବୁ ବିକ୍ରି ହୋଇସାରିଛି । କେବଳ ଆପଣଙ୍କର ଏହି ଗୀତାପୋଥୀ, ଖଣ୍ଡେ ଧୋତି ଓ ଖଣ୍ଡେ ଗାମୁଛା ଏବଂ ମୋର ଖଣ୍ଡିଏମାତ୍ର ଶାଢ଼ି ରହିଛି । ଆଜି ରାନ୍ଧିବାକୁ ଘରେ ଚାଉଳ ବି ନାହିଁ । କାଲି ସବୁ ସରିଯାଇଛି ।'' ବ୍ରାହ୍ମଣ କୌଣସି ଉତ୍ତର ନ ଦେଇ ସବୁଦିନ ପରି ସେଦିନ ବି ପୋଖରୀ ଆଡ଼କୁ ଚାଲିଲେ ।

ସବୁଦିନ ପରି ପଣ୍ଡିତ ମହାଶୟ ପୋଖରୀକୁ ଗଲେ ଓ ଶୌଚ-ସ୍ନାନକାର୍ଯ୍ୟ ସାରି ସନ୍ଧ୍ୟା, ଗାୟତ୍ରୀ, ଜପ ଆଦି ନିତ୍ୟକର୍ମ କଲେ । ତା'ପରେ ସେ ଗୀତା ଅଧ୍ୟୟନ କରିଲାବେଳକୁ ସେଦିନ ନିଜର ଅତି ପ୍ରିୟ ଶ୍ଳୋକଟି ତୁଣ୍ଡରୁ ବାହାରିପଡ଼ିଲା—

***ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।***
***ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥***

ଅର୍ଥାତ୍ ''ଯେଉଁ ଅନନ୍ୟପ୍ରେମୀ ଭକ୍ତମାନେ ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ ନିରନ୍ତର ଚିନ୍ତନପୂର୍ବକ ନିଷ୍କାମଭାବରେ ଭଜନ କରନ୍ତି, ନିତ୍ୟନିରନ୍ତର ମୋର ଚିନ୍ତନ କରୁଥିବା ସେହି ସଜ୍ଜନମାନଙ୍କର ଯୋଗକ୍ଷେମ ମୁଁ ସ୍ୱୟଂ ବହନ କରେ ।''

ସେଦିନ ପଣ୍ଡିତ ମହାଶୟ ଏହି ଶ୍ଳୋକଟି ପଢ଼ି ଚମକି ପଡ଼ିଲେ ଏବଂ ତାହା ପଢ଼ି ପଢ଼ି ମନେ ମନେ ବିଚାର କରିବାକୁ ଲାଗିଲେ, ''ଜଣାପଡୁଛି, ଏ ଶ୍ଳୋକଟି ଭଗବାନଙ୍କ ବଚନ ନୁହେଁ; ଭଗବାନ୍ ଏ କଥା କହିଥିବା ପରି ଜଣାପଡୁନି; ଏହା ବୋଧହୁଏ ଗୋଟିଏ ପ୍ରକ୍ଷିପ୍ତ ଶ୍ଳୋକ ହୋଇପାରେ; କେହି ହୁଏତ ଏ ଶ୍ଳୋକଟି ଏଠି ଯୋଡ଼ିଦେଇଥାଇ ପାରନ୍ତି । ଯଦି ଭଗବାନ୍ ଏ କଥା କହିଥାଆନ୍ତେ, ତା'ହେଲେ ସେ କ'ଣ ମୋ ଭାର ସମ୍ଭାଳନ୍ତେ ନାହିଁ ? ମୁଁ ତ ସବୁମନ୍ତେ ତାଙ୍କ ଉପରେ ନିର୍ଭର କରେ; କିନ୍ତୁ ସେ ତ ଆଜି ପର୍ଯ୍ୟନ୍ତ ମୋ କଥା ଟିକିଏ ବି ବୁଝିଲେ ନାହିଁ; ମୋତେ ଟିକିଏ ବି ମନେ ପକାଇଲେ ନାହିଁ ।'' ଏପରି ବିଚାର କରି ବ୍ରାହ୍ମଣ ସେହି ଶ୍ଳୋକ

ଉପରେ ହଳଦି ବୋଳିଦେଲେ ଏବଂ ସେହି ଶ୍ଳୋକଟିକୁ ଛାଡ଼ି ଗୀତା ପାଠ କରିବାକୁ ଲାଗିଲେ ।

ବ୍ରାହ୍ମଣଙ୍କର ଏହି ମନୋଭାବକୁ ଲକ୍ଷ୍ୟ କରି ସର୍ବହୃଦକନ୍ଦରନିବାସୀ ଭକ୍ତବାଂଛାକଳ୍ପତରୁ ଭଗବାନ୍ ତତ୍‌କ୍ଷଣାତ୍ ଜଣେ ବିଦ୍ୟାର୍ଥୀରୂପ ଧରିପକାଇଲେ ଓ ଗୋଟିଏ ଘୋଡ଼ାରେ ବସି ବ୍ରାହ୍ମଣଙ୍କ ଘରେ ପହଞ୍ଚିଗଲେ । ବ୍ରାହ୍ମଣଙ୍କ ଧର୍ମପତ୍ନୀଙ୍କୁ ଉପହାରସ୍ୱରୂପ ଥାଳିଏ ମିଷ୍ଟାନ୍ନ ଦେଇ ସେ ପଚ୍ଚରିଲେ, ‘‘ଗୁରୁ ମହାରାଜ କାହାନ୍ତି ?’’ ବ୍ରାହ୍ମଣୀ କହିଲେ, ‘‘ଏଠାରୁ ମାଇଲିଏ ଦୂରରେ ଗୋଟିଏ ପୋଖରୀ ଅଛି । ସେ ପ୍ରତିଦିନ ସେଠାକୁ ଶୌଚ-ସ୍ନାନ ଓ ନିତ୍ୟକର୍ମ କରିବାକୁ ଯାଆନ୍ତି; ପ୍ରାୟ ଏଗାରଟାବେଳେ ଫେରିଆସନ୍ତି । ଏବେ ତ ଦଶଟା ବାଜିଛି; ସେ ଆଉ ଘଣ୍ଟାକ ପରେ ଫେରିବେ । ଆପଣ କିଏ ? ଏ ମିଷ୍ଟାନ୍ନ କାହିଁକି ଆଣିଛନ୍ତି ?’’ ବିଦ୍ୟାର୍ଥୀଜଣକ କହିଲେ, ‘‘ମୁଁ ଗୁରୁ ମହାରାଜଙ୍କର ଜଣେ ଶିଷ୍ୟ; ଗୁରୁ ମହାରାଜଙ୍କର ଏବଂ ଆପଣଙ୍କର ସେବା ଉଦ୍ଦେଶ୍ୟରେ ଏହି ମିଷ୍ଟାନ ଆଣିଛି । ଆପଣ ଏତକ ରଖନ୍ତୁ ।’’ ବ୍ରାହ୍ମଣୀ କହିଲେ, ‘‘ପଣ୍ଡିତ ମହାଶୟ ତ କାହାକୁ ଶିଷ୍ୟ କରନ୍ତି ନାହିଁ, କି କାହାରିଠାରୁ କିଛି ଗ୍ରହଣ ବି କରନ୍ତି ନାହିଁ । ମୋତେ ବି କାହାରିଠାରୁ କୌଣସି ଜିନିଷ ଗ୍ରହଣ ନ କରିବାକୁ ସେ ଆଦେଶ ଦେଇଛନ୍ତି । ଏଣୁ କେହି କୌଣସି ଜିନିଷ ଦେଲେ, ମୁଁ ତାହା ଗ୍ରହଣ କରିପାରିବି ନାହିଁ । ଆପଣ ଏହି ମିଷ୍ଟାନ୍ନ ଫେରାଇନିଅନ୍ତୁ ।’’ ବିଦ୍ୟାର୍ଥୀଜଣକ କହିଲେ, ଆପଣ ଯାହା କହୁଛନ୍ତି, ମୁଁ ମଧ୍ୟ ସେଥିରେ ଏକମତ । ପ୍ରକୃତରେ ସେ କାହାକୁ ଶିଷ୍ୟ କରନ୍ତି ନାହିଁ; ଏକଥା ସତ । ମୋ ଛଡ଼ା ସେ ଆଉ କାହାକୁ ଶିଷ୍ୟ କରିନାହାନ୍ତି, କି କରିବେ ନାହିଁ ମଧ୍ୟ । ମୋ ଉପରେ ତାଙ୍କର ବିଶେଷ କୃପା ଥିବାରୁ ସେ ମୋତେ ଶିଷ୍ୟରୂପେ ଗ୍ରହଣ କରିଛନ୍ତି । ମୁଁ ହେଉଛି ତାଙ୍କର ଏକମାତ୍ର ଶିଷ୍ୟ; ଏହା ମୁଁ ଶପଥ କରି କହୁଛି; ଆପଣ ବିଶ୍ୱାସ କରନ୍ତୁ ।’’ ବ୍ରାହ୍ମଣୀ କହିଲେ, ‘‘ମୁଁ ତ କେବେ ବି ଶୁଣିନାହିଁ ଯେ, ସେ ଆପଣଙ୍କୁ ଶିଷ୍ୟରୂପେ ଗ୍ରହଣ କରିଛନ୍ତି । ମୁଁ ନିଶ୍ଚିତରୂପେ ଜାଣେ ଯେ, ସେ କାହାକୁ କେବେ ଶିଷ୍ୟ କରିନାହାନ୍ତି । ଆପଣ ତାଙ୍କର ଶିଷ୍ୟ ବୋଲି ମୁଁ କିପରି ସ୍ୱୀକାର କରିବି ? ସେ ଯାହା ହେଉ, ମୁଁ କୌଣସି ପ୍ରକାରେ ଏହି ମିଷ୍ଟାନ୍ନ ଗ୍ରହଣ କରିପାରିବି ନାହିଁ । ଗୁରୁ ମହାଶୟ ଫେରିଆସିଲେ, ଆପଣ ତାଙ୍କୁ ଦେଇପାରନ୍ତି ।’’ ବିଦ୍ୟାର୍ଥୀଜଣକ କହିଲେ, ‘‘ହଉ ହେଲା, ଏ ଥାଳି ଏଇଠି ରହିଲା ଏବଂ ମୋ ଘୋଡ଼ା ମଧ୍ୟ ଏଇଠି ବନ୍ଧା ହୋଇଛି । ମୁଁ ପୁଣି ଆସି ଗୁରୁ ମହାଶୟଙ୍କୁ ଦେଖା

କରିବି ।'' ତାହା ଶୁଣି ବ୍ରାହ୍ମଣୀ କହିଲେ, ''ଆପଣ ଏ ଥାଳି ଫେରାଇନିଅନ୍ତୁ; ପଣ୍ଡିତ ମହାଶୟ ଫେରିଲେ ଆପଣ ପୁଣି ଆଣିପାରନ୍ତି । ପଣ୍ଡିତ ମହାଶୟଙ୍କ ଆଦେଶ ବିନା ମୁଁ ଏହା କୌଣସିପ୍ରକାରେ ରଖିପାରିବି ନାହିଁ ।'' କିନ୍ତୁ ଭଗବାନଙ୍କ ଲୀଳା ତ ବଡ଼ ବିଚିତ୍ର । ଥାଳିଟି ସେଇଠି ରଖିଦେଇ ସେ ଚାଲିଗଲେ । ସେ ଚାଲିଯାଉଥିବାବେଳେ ବ୍ରାହ୍ମଣୀ ପଚାରିଲେ, ''ଆପଣଙ୍କ ନାମ ଓ ଠିକଣା ହେଲେ ଦେଇଥାଆନ୍ତୁ, ଯାହାଫଳରେ କି ପଣ୍ଡିତ ମହାଶୟ ଫେରିଆସିଲେ ଏ ମିଷ୍ଟାନ୍ନଥାଳିକ ଆପଣଙ୍କ ଘରକୁ ଫେରସ୍ତ କରିଦିଆଯାଇ ପାରିବ ।'' ବିଦ୍ୟାର୍ଥୀଜଣକ କହିଲେ, ''ସେ ମୋତେ ଭଲଭାବରେ ଜାଣନ୍ତି । ମୋ' ଉପରେ ତାଙ୍କର ଅଶେଷ କୃପା; କାରଣ ମୁଁ ହେଉଛି ତାଙ୍କର ଏକମାତ୍ର ଶିଷ୍ୟ । ମୋ ଛଡ଼ା ତାଙ୍କର ଅନ୍ୟ କୌଣସି ଶିଷ୍ୟ ନାହାନ୍ତି । ଆପଣ ତାଙ୍କୁ ଏତିକିମାତ୍ର କହିଦେବେ ଯେ, ଆଜି ସକାଳେ ସେ ଯାହାଙ୍କ ମୁହଁରେ ହଳଦୀ ବୋଳିଦେଇଥିଲେ, ସେହି ଶିଷ୍ୟ ଆସିଥିଲା । ଏତିକି କହିଦେଲେ, ସେ ସବୁକଥା ବୁଝିଯିବେ ।'' ଏପରି କହି ଭଗବାନ୍ ଚାଲିଗଲେ ।

ଘଣ୍ଟାକ ପରେ ପଣ୍ଡିତ ମହାଶୟ ପୋଖରୀରୁ ଫେରିଲେ । ଘରେ ପହଞ୍ଚି ଦେଖନ୍ତି ତ, ପୂରାପୂରି ଥାଳିଏ ମିଷ୍ଟାନ୍ନ ଥୁଆ ହୋଇଛି । ପଣ୍ଡିତ ମହାଶୟ ଟିକିଏ ଉତ୍ତେଜିତ ହୋଇ ପଚାରିଲେ, '' ଏ ମଷ୍ଟାନ୍ନ କେଉଁଠୁ ଆସିଲା ? ଯାକୁ କିଏ ଦେଲା ? ତୁମେ କାହିଁକି ରଖିଲ ?'' ବ୍ରାହ୍ମଣୀ ହାତ ଯୋଡ଼ି, ବିନୟ ହୋଇ କହିଲେ, ''ସ୍ୱାମୀ ! ମୁଁ ରଖି ନାହିଁ । ଜଣେ ବିଦ୍ୟାର୍ଥୀ ଜବରଦସ୍ତ ଏଠାରେ ରଖିଦେଇ ଗଲେ । ସେ କହିଲେ ଯେ, ସେ ଗୁରୁ ମହାରାଜଙ୍କ ସେବାରୂପେ ଏହା ଆଣିଛନ୍ତି । ତାହା ସତ୍ତ୍ୱେ ମୁଁ ଏହା ଗ୍ରହଣ କଲି ନାହିଁ । କିନ୍ତୁ ସେ ଜବରଦସ୍ତ ଏଠାରେ ଥୋଇଦେଇ ଚାଲିଗଲେ ।'' ବ୍ରାହ୍ମଣ କହିଲେ, ''ତୁମେ ଭଲଭାବରେ ଜାଣ ଯେ, ମୁଁ ଆଜିପର୍ଯ୍ୟନ୍ତ କାହାକୁ ଶିଷ୍ୟ କରିନାହିଁ, କି ଏବେ ବି  କାହାକୁ ଶିଷ୍ୟରୂପେ ଗ୍ରହଣ କରୁନାହିଁ ।'' ପତ୍ନୀ କହିଲେ, ''ତାହା ତ ସତ । ମୁଁ ବି ତାଙ୍କୁ କହିଲି ଯେ, ପଣ୍ଡିତ ମହାଶୟ କାହାକୁ ଶିଷ୍ୟ କରିନାହାନ୍ତି, କରୁନାହାନ୍ତି, କି କରିବେ ନାହିଁ । ତାହା ଶୁଣି ସେ ମୋ କଥାରେ ଏକମତ ହେଲେ ଏବଂ କହିଲେ, 'ମୁଁ ଏହା ଭଲରୂପେ ଜାଣେ । ଗୁରୁ ମହାରାଜ ମୋ ଛଡ଼ା ଅନ୍ୟ କାହାକୁ ଶିଷ୍ୟ କରିନାହାନ୍ତି ଏବଂ କରିବେ ନାହିଁ ମଧ୍ୟ । ମୁଁ ହେଉଛି ତାଙ୍କର ଏକମାତ୍ର ଶିଷ୍ୟ । ମୋ ଉପରେ ତାଙ୍କର ବିଶେଷ ଅନୁଗ୍ରହ । ଏଣୁ ସେ ମୋତେ ଶିଷ୍ୟରୂପେ ଗ୍ରହଣ କରିଛନ୍ତି । ମୋ କଥା ବିଶ୍ୱାସ କରନ୍ତୁ । ମୁଁ ଶପଥ କରି କହୁଛି ଯେ, ମୋର

ଏକଥା ନିରାଟ ସତ୍ୟ ।'' ତାହା ସତ୍ତ୍ୱେ ମୁଁ କହିଲି, ''ସେ ଆପଣଙ୍କୁ ଶିଷ୍ୟରୂପେ ଗ୍ରହଣ କରିଛନ୍ତି ବୋଲି ମୁଁ କେବେ ଶୁଣିନାହିଁ । ସେ ଯାହା ହେଉ ନା କାହିଁକି, ମୁଁ ତାଙ୍କର ବିନା ଆଦେଶରେ ଏହି ଉପହାର ଗ୍ରହଣ କରିପାରିବି ନାହିଁ । କିନ୍ତୁ ସେ ଏହାକୁ ଏଠାରେ ରଖିଦେଇ ଚାଲିଗଲେ ।'' ପଣ୍ଡିତ ମହାଶୟ କହିଲେ, ''ତାଙ୍କ ନାମ ଓ ଠିକଣା ତ ପଚାରିବା ଉଚିତ ଥିଲା; ତା'ହେଲେ ତାଙ୍କ ଜିନିଷ ତାଙ୍କ ଘରକୁ ଫେରସ୍ତ କରି ଦିଆଯାଇପାରନ୍ତା ।'' ବ୍ରାହ୍ମଣୀ କହିଲେ, ''ମୁଁ ତାଙ୍କୁ ତାଙ୍କ ନାମ ଓ ଠିକଣା ପଚାରିବାରୁ ସେ କହିଲେ, 'ଗୁରୁ ମହାରାଜ ମୋତେ ଭଲଭାବରେ ଜାଣନ୍ତି । ଆଜି ସକାଳେ ସେ ମୋ ମୁହଁରେ ହଳଦୀ ବୋଳିଦେଇଥିଲେ; ଏତେ ଶୀଘ୍ର କ'ଣ ସେ ମୋତେ ଭୁଲିଯିବେ ! ଆପଣ କହିଦେବେ ଯେ, ଯାହାଙ୍କ ମୁହଁରେ ଆଜି ସକାଳେ ହଳଦୀ ବୋଳିଦେଇଥିଲେ, ଆପଣଙ୍କର ସେହି ଏକମାତ୍ର ଶିଷ୍ୟ ଆସି ପ୍ରଣାମି ଦେଇଯାଇଛନ୍ତି । ବାସ୍, ଏତିକି କହି ସେ ଚାଲିଗଲେ ଏବଂ କହିଗଲେ, 'ଏ ମିଷ୍ଟାନ୍ନ ଥାଳି ଏଇଠି ରହିଲା; ମୋ ଘୋଡ଼ା ବି ଏଇଠି ବନ୍ଧା ହୋଇଛି । ମୁଁ ପୁଣି ଆସି ଗୁରୁ ମହାରାଜଙ୍କୁ ଦର୍ଶନ କରିବି ।'

ଏହା ଶୁଣିବାମାତ୍ରେ ପଣ୍ଡିତଙ୍କର ଶରୀର ରୋମାଞ୍ଚିତ ହୋଇଉଠିଲା; ସେ ପ୍ରେମଗଦ୍ଗଦ କଣ୍ଠରେ କହିଲେ, ''ବ୍ରାହ୍ମଣୀ ! ତୁମେ ଧନ୍ୟ ! ତୁମର ଜନ୍ମ ସାର୍ଥକ ହୋଇଗଲା । ତୁମେ କୃତକୃତ୍ୟ ହୋଇଗଲ । ସେ ତ ହେଉଛନ୍ତି ସାକ୍ଷାତ୍ ଭଗବାନ୍ । ତୁମର ପରମ ସୌଭାଗ୍ୟ ଯେ, ତୁମେ ତାଙ୍କର ପ୍ରତ୍ୟକ୍ଷ ଦର୍ଶନ ପାଇଗଲ । ମୁଁ ଅବିଶ୍ୱାସୀ ଓ ହତଭାଗା; ଏଣୁ ମୋତେ ତାଙ୍କ ଦର୍ଶନ ମିଳିଲା ନାହିଁ । ମୁଁ ଗୋଟିଏ ଦିନ ବି ଭୋକ ସହିପାରିଲି ନାହିଁ ଏବଂ ଅଧୀର ହୋଇ ପ୍ରଭୁଙ୍କ ବାଣୀ ଉପରେ ହଳଦୀ ବୋଳିଦେଲି । ଗୀତା ସ୍ୱୟଂ ଭଗବାନଙ୍କର ମୁଖନିଃସୃତ ବାଣୀ; ତା' ଉପରେ ହଳଦୀ ବୋଳିଦେବା ଅର୍ଥ ସତରେ ଭଗବାନଙ୍କ ମୁହଁରେ ହଳଦୀ ବୋଳିଦେବା । ଆଜି ଗୀତା ଅଧ୍ୟୟନ କରିବା ସମୟରେ ଯେତେବେଳେ ଶ୍ଳୋକ ଆସିଲା—

*ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।*
*ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥*

—ସେତେବେଳେ ଏଥିରେ ଅବିଶ୍ୱାସ ହେତୁ ମୋ ମନରେ ଭଗବାନଙ୍କ ବାଣୀ ପ୍ରତି ସନ୍ଦେହ ଜାଗିଉଠିଲା । ମୁଁ ଭାବିଲି, ଏହି ବାଣୀ ଯଦି ସତରେ ଭଗବାନଙ୍କର ହୋଇଥାନ୍ତା, ତେବେ ସେ ନିଶ୍ଚୟ ମୋର ଯୋଗକ୍ଷେମ ବହନ

କରିଥାନ୍ତେ । ଏହା ବୋଧହୁଏ ଏକ ପ୍ରକ୍ଷିପ୍ତ ବାକ୍ୟ; ଅନ୍ୟ କେହି ଏହାକୁ ଏଠାରେ ଯୋଡ଼ିଦେଇଛନ୍ତି । ଏପରି ଭାବି ମୁଁ ସେହି ଶ୍ଳୋକ ଉପରେ ହଳଦୀ ବୋଳିଦେଲି । ମୁଁ ଅତ୍ୟନ୍ତ ନୀଚ, ଅତ୍ୟନ୍ତ ପାପୀ ଓ ଅବିଶ୍ୱାସୀ । ମୋ ହୃଦୟରେ ଯଦି ଟିକିଏମାତ୍ର ଧୈର୍ଯ୍ୟ ଥାଆନ୍ତା, ମୁଁ କେବେହେଲେ ସେପରି ନୀଚ, ଗର୍ହିତ କାର୍ଯ୍ୟ କରି ନ ଥାନ୍ତି । ସେହି ପରମ କାରୁଣିକ ଭଗବାନ୍ ତ ସଦାସର୍ବଦା ଯୋଗକ୍ଷେମ ବହନ କରି ଆସୁଛନ୍ତି । ସବୁକିଛି ଶେଷ ହୋଇଯିବା ସଙ୍ଗେ ସଙ୍ଗେ ସେ ନିଜେ ଆସି ପହଞ୍ଚିଗଲେ । ହଳଦୀ ବୋଳିଦେବାର ଅପରାଧ ହେତୁ ମୁଁ ତାଙ୍କ ଦର୍ଶନରୁ ବଞ୍ଚିତ ହୋଇଗଲି । ତୁମେ ଶୁଦ୍ଧପୂତ, ଅନନ୍ୟଭକ୍ତ ତଥା ପତିବ୍ରତା । ତେଣୁ ସେ ତୁମକୁ ଦର୍ଶନ ଦେଲେ । ସେ ଯେପର୍ଯ୍ୟନ୍ତ ଫେରି ନ ଆସିଛନ୍ତି, ସେପର୍ଯ୍ୟନ୍ତ ମୁଁ ଶାନ୍ତିରେ ରହିପାରିବି ନାହିଁ ।'' ଏହା କହି ସେ ବାହାର ଆଡ଼କୁ ଚାହିଁଦିଅନ୍ତି ତ, ଦେଖିଲେ, ଘୋଡ଼ା ଉପରେ ଗୋଟିଏ ଭାର ଲଦା ହୋଇଛି । ସେ ସଙ୍ଗେ ସଙ୍ଗେ ଯାଇ ଘୋଡ଼ା ଉପରୁ ଭାର ଓହ୍ଲାଇ ତାହା ଘରକୁ ନେଇଆସିଲେ । ଭାର ଖୋଲି ଦେଖନ୍ତି ତ, ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେଥିରେ ଲକ୍ଷାଧିକ ଟଙ୍କାର ରତ୍ନ ଭରି ହୋଇ ରହିଥିଲା । ତାହା ଦେଖି ବ୍ରାହ୍ମଣ ନିଜ କୃତକର୍ମ ନିମନ୍ତେ ପଶ୍ଚାତ୍ତାପ କରିବାକୁ ଲାଗିଲେ । ସେ ପୁଣି ପ୍ରେମରେ ତନ୍ମୟ ହୋଇ, ଗଦ୍‌ଗଦ କଣ୍ଠରେ ଭାଗବତର ଗୋଟିଏ ଶ୍ଳୋକ ଗାଇବାକୁ ଲାଗିଲେ–

***ଅହୋ ବକୀ ଯଂ ସ୍ତନକାଳକୂଟଂ ଜିଘାଂସୟାପାୟୟଦପ୍ୟସାଧ୍ୱୀ ।***
***ଲେଭେ ଗତିଂ ଧାତ୍ର୍ୟୁଚିତାଂ ତତୋଽନ୍ୟଂ କଂ ବା ଦୟାଳୁଂ ଶରଣଂ ବ୍ରଜେମ ॥****

*(୩।୨।୨୩)*

ମୋତେ ଧିକ ! ଯେ ଏପରି ଦୀନବନ୍ଧୁ, ଯେ ପତିତପାବନ, ଯେ ସକଳ ପ୍ରାଣୀଙ୍କର ଭରଣ-ପୋଷଣ କରନ୍ତି, ସେହି ବିଶ୍ୱମ୍ଭର ପ୍ରଭୁଙ୍କ ଉପରେ ମୁଁ ମିଥ୍ୟା ଦୋଷାରୋପ କରି ନିଜକୁ କଳଙ୍କିତ କରିଛି । ମୁଁ ତ ଅର୍ଥର ଦାସ । ଯଦି ମୁଁ ସତରେ

* ଅର୍ଥାତ୍ ''ବଡ଼ ଆଶ୍ଚର୍ଯ୍ୟର କଥା, ଯେଉଁ ପାପିନୀ ପୂତନା ଶ୍ରୀକୃଷ୍ଣଙ୍କ ପ୍ରାଣ ବିନାଶ କରିବାର ଅଭିଳାଷ ନେଇ ନିଜ ସ୍ତନରେ ହଳାହଳ କାଳକୂଟ ବିଷ ଲଗାଇଥିଲା ଏବଂ ତାଙ୍କୁ ସେଥିରୁ ସ୍ତନ୍ୟପାନ କରାଇଥିଲା, ତାକୁ ମଧ୍ୟ ଶ୍ରୀକୃଷ୍ଣ ମାତାଙ୍କର ଯୋଗ୍ୟ ପରମଗତି ପ୍ରଦାନ କଲେ । ଏପରି ଦୟାଶୀଳତାର କ'ଣ ପଟାନ୍ତର ଅଛି ! ସୁତରାଂ ସେହି ଭଗବାନଙ୍କ ଛଡ଼ା ଏହି ଜଗତରେ ଆଉ କିଏ ବା ଏପରି ଦୟାଳୁ ଅଛନ୍ତି ଯେ, ତାଙ୍କ ଠାରେ ଆମେ ଶରଣ ପଶିବା !''

ପ୍ରଭୁଙ୍କର ଦାସ ହୋଇଥାନ୍ତି, ତେବେ ମୋତେ ଖାଦ୍ୟ-ବସ୍ତ୍ରର ଚିନ୍ତା କାହିଁକି ଘାରୁଥାନ୍ତା ଏବଂ କାହିଁକି ଭଗବାନ୍ ମୋତେ ସନ୍ତୁଷ୍ଟ କରିବା ନିମନ୍ତେ ରତ୍ନରାଶି ଦେଇଯାଆନ୍ତେ ! ମୁଁ ଯଦି ପ୍ରକୃତରେ ଭଗବାନଙ୍କର ତତ୍ତ୍ୱ-ରହସ୍ୟ ଜାଣିଥାଆନ୍ତି, ମୋର ତାଙ୍କ ଠାରେ ଯଦି ଅନାବିଳ ଶୁଦ୍ଧପ୍ରେମ ଥାଆନ୍ତା ଓ ମୋ ମନରେ ଯଦି ଅର୍ଥଲିପ୍ସା ନ ଥାନ୍ତା, ତେବେ ସେ ମୋତେ ଏହି ରତ୍ନ ପ୍ରଦାନ କରି କାହିଁକି ମୋହିତ କରନ୍ତେ !'' ଏହା କହି କହି ବ୍ରାହ୍ମଣ ଆନନ୍ଦବିଭୋର ହୋଇଗଲେ ।

ବହୁତ ଡେରି ହେବାର ଦେଖି ବ୍ରାହ୍ମଣୀ କହିଲେ, ''ଭଗବାନ୍ ଦେଇଯାଇଥିବା ପ୍ରସାଦ ସେବନ କରନ୍ତୁ ।'' ପଣ୍ଡିତ ମହାଶୟ କହିଲେ, ''ଭଗବାନ୍ ସ୍ୱୟଂ ଆସିବେ ବୋଲି କହିଯାଇଛନ୍ତି; ସୁତରାଂ ସେ ଆସିଲେ ଯାଇ ମୁଁ ପ୍ରସାଦ ସେବନ କରିବି ।'' ସନ୍ଧ୍ୟାସମୟ ହୋଇଗଲା; କିନ୍ତୁ ଭଗବାନ୍ ଆସିଲେ ନାହିଁ । ସେତେବେଳେ ବ୍ରାହ୍ମଣୀ ପୁଣିଥରେ କହିଲେ, ''ସନ୍ଧ୍ୟା ହେଲାଣି; ବହୁତ ଡେରି ହୋଇଗଲାଣି; ବର୍ତ୍ତମାନ ପ୍ରସାଦ ସେବନ କରି କୃତାର୍ଥ ହୁଅନ୍ତୁ ।'' ପଣ୍ଡିତ ମହାଶୟ କଣ ଆଉ ତାହା ମାନିବା ଅବସ୍ଥାରେ ଥିଲେ ! ସେ ପୁଣିଥରେ ପୂର୍ବ ପରି ଉତ୍ତର ଦେଲେ । ରାତି ଦଶ ବାଜିଲା; ଶୋଇବାବେଳ ହୋଇଗଲା; କିନ୍ତୁ ଭଗବାନ୍ ସେପର୍ଯ୍ୟନ୍ତ ଆସିଲେ ନାହିଁ । ବ୍ରାହ୍ମଣୀ ବଡ଼ ବ୍ୟାକୁଳ ହୋଇ ପୁଣିଥରେ ବିନୟପୂର୍ବକ କହିଲେ, ''ଆଗେ ପ୍ରସାଦ ସେବନ କରିନିଅନ୍ତୁ ।'' ବ୍ରାହ୍ମଣଦେବତା ତଥାପି ପ୍ରସାଦ ସେବନ କଲେ ନାହିଁ ଓ ଦୁହେଁ କିଛି ନ ଖାଇ ଉପବାସରେ ଶୋଇପଡ଼ିଲେ ।

ରାତି ଏଗାର । କବାଟ ଖଟ୍ ଖଟ୍ କରି କେହି ଜଣେ ବଡ଼ ମଧୁର କଣ୍ଠରେ ଡାକିଲେ, ''ଗୁରୁମାଆ ! ଗୁରୁମାଆ ! କବାଟ ଖୋଲନ୍ତୁ ।'' ବ୍ରାହ୍ମଣଦମ୍ପତିଙ୍କୁ ସେପର୍ଯ୍ୟନ୍ତ ନିଦ ହୋଇ ନ ଥିଲା । ସୁମଧୁର କଣ୍ଠ ତଥା 'ଗୁରୁମାଆ !' ସମ୍ବୋଧନ ଶୁଣି ବ୍ରାହ୍ମଣୀ ଚମକି ପଡ଼ିଲେ ଏବଂ ଆନନ୍ଦବିଭୋର ହୋଇ କହିଲେ, ''ସ୍ୱାମୀ ! ହେଇଟି ଆପଣଙ୍କ ଭଗବାନ୍ ଆସିଗଲେ ।'' ବ୍ରାହ୍ମଣ ଦୌଡ଼ିଯାଇ କବାଟ ଖୋଲିଦେଲେ ଏବଂ ଭଗବାନଙ୍କ ପାଦତଳେ ପଡ଼ିଗଲେ । ଭଗବାନ୍ ତାଙ୍କୁ ଉଠାଇ କୋଳାଗ୍ରତ କଲେ । ପଣ୍ଡିତ ମହାଶୟଙ୍କର ସେତେବେଳକାର ଅବସ୍ଥା ଥିଲା ବଡ଼ ବିଚିତ୍ର । ତାଙ୍କର ସାରା ଶରୀର ରୋମାଞ୍ଚିତ ହୋଇ ଉଠୁଥାଏ; ନୟନରୁ ଲୋତକଧାରା ବହିଯାଉଥାଏ; ହୃଦୟ ପ୍ରମୋଦିତ ଓ ବାଣୀ ଗଦ୍‌ଗଦ । ତଥାପି ସେ କୌଣସିପ୍ରକାରେ ଧୈର୍ଯ୍ୟ ଧରି ନିଜକୁ ସମ୍ଭାଳିନେଇ କହିଲେ, ''ପ୍ରଭୋ ! ମୁଁ ତ ଏକେ ଅର୍ଥର ଦାସ । ମୋ'ପରି ପାପିଷ୍ଠ ଉପରେ ବି ଆପଣ ଯେଉଁ ଏତେ କୃପା

କଲେ, ତାହା କେବଳ ଆପଣଙ୍କ ପରମ କାରୁଣିକ ସ୍ୱଭାବ ଯୋଗୁଁ ହିଁ ହୋଇଛି । ଯଦି ମୋର ଭାବ ଓ ଆଚରଣ ଆଡ଼କୁ ଧ୍ୟାନ ଦିଆଯାଏ, ତେବେ ଆପଣଙ୍କ ଦର୍ଶନ ତ ଦୂରର କଥା, ମୋତେ କୌଣସି ନରକରେ ବି ସ୍ଥାନ ମିଳିବା କଥା ନୁହେଁ । ମୁଁ ଆପଣଙ୍କ ପରି ସବୁପ୍ରକାରେ ନିର୍ଦୋଷ ମହାପୁରୁଷଙ୍କ ଉପରେ ଦୋଷାରୋପ କରିଛି । ମୋ ପରି ଅର୍ଥଲିପ୍ସୁ ନୀଚ ବୋଧ ହୁଏ ଆଉ କେହି ନାହାନ୍ତି । ମୁଁ ତ ଅର୍ଥପ୍ରାପ୍ତି ନିମନ୍ତେ ହିଁ ଆପଣଙ୍କର ଭଜନ କରୁଥିଲି; ସେହି କାରଣରୁ ଆପଣ ମୋର ସନ୍ତୋଷ ବିଧାନ ନିମନ୍ତେ ଏହି ରତ୍ନ ପ୍ରଦାନ କରିଛନ୍ତି । ମୁଁ ଅତ୍ୟନ୍ତ କାମନାପରାୟଣ । ଏଣୁ ମୁଁ ଭାବିଥିଲି, ଆପଣ ସାଂସାରିକ ଯୋଗକ୍ଷେମ ବହନ କରନ୍ତି; ନଚେତ୍ ମୁଁ ପାରମାର୍ଥିକ ଯୋଗକ୍ଷେମ ହିଁ କାମନା କରିଥାନ୍ତି । ଯେ ନିଷ୍କାମଭାବରେ କେବଳମାତ୍ର ଆପଣଙ୍କ ଉପରେ ନିର୍ଭର କରନ୍ତି, ସେ ତ ଏହି ପାରମାର୍ଥିକ ଯୋଗକ୍ଷେମ ବି ଚାହାଁନ୍ତି ନାହିଁ ଏବଂ ସେ ନ ଚାହିଁଲେ ମଧ୍ୟ ଆପଣ ତାଙ୍କର ଯୋଗକ୍ଷେମ ବହନ କରନ୍ତି । ମୋ'ପରି ହତଭାଗାଠାରେ ଏପରି ଶ୍ରଦ୍ଧା, ପ୍ରେମ, ବିଶ୍ୱାସ ଓ ନିର୍ଭରଶୀଳତା କେଉଁଠୁ ଆସିବ ଯେ, ସେ ଆପଣଙ୍କ ପରି ମହାପୁରୁଷଙ୍କର ଅହେତୁକ ଅନନ୍ୟ ଶରଣ ଗ୍ରହଣ କରିବ !''

ଭଗବାନ୍ କହିଲେ, ''ଏଥିରେ ତୁମର କୌଣସି ଦୋଷ ନାହିଁ । ତୁମେ ତ ମୋ ଉପରେ ହିଁ ନିର୍ଭର କରିଥିଲ । ମୋର ଆସିବାରେ ଯେଉଁ ବିଳମ୍ବ ହେଲା, ତାହା ମୋର ସ୍ୱଭାବର ଦୋଷ; କିନ୍ତୁ ଏପର୍ଯ୍ୟନ୍ତ ତୁମେ ଖାଇନା କାହିଁକି ?'' ପଣ୍ଡିତ ମହାଶୟ କହିଲେ, ''ଆପଣ କହିଯାଇଥିଲେ, 'ମୁଁ ପୁଣି ଆସି ଦେଖା କରିବି;' ତେଣୁ ଆପଣ ନ ଆସିବା ପର୍ଯ୍ୟନ୍ତ ମୁଁ କିପରି ଭୋଜନ କରନ୍ତି ? ପ୍ରଥମେ ଆପଣ ଭୋଜନ କରନ୍ତୁ, ତାପରେ ଆମେ ବି ପ୍ରସାଦ ସେବନ କରିବୁ ।'' ଭଗବାନ୍ କହିଲେ, ''ନା, ନା, ଚାଲ ଆମେ ସମସ୍ତେ ସାଥି ହୋଇ ଭୋଜନ କରିବା ।'' ତା'ପରେ ବ୍ରାହ୍ମଣପତ୍ନୀ ଭଗବାନଙ୍କର ସଙ୍କେତ ପାଇ ଉଭୟଙ୍କୁ ଖାଇବାକୁ ଦେଲେ । ବ୍ରାହ୍ମଣଦେବତା ଅତ୍ୟନ୍ତ ପ୍ରେମବିହ୍ୱଳ ହୋଇ ପ୍ରସାଦ ସେବନ କଲେ । ଭୋଜନ ପରେ ଭଗବାନ୍ କହିଲେ, 'ତୁମର ଯାହା ଇଚ୍ଛା, ମୋ'ଠାରୁ ତାହା ମାଗିନିଅ; ତୁମ ନିମନ୍ତେ ଦୁର୍ଲଭ ବୋଲି କିଛି ନାହିଁ ।'' ବ୍ରାହ୍ମଣ କହିଲେ, ''ଯେତେବେଳେ ଆପଣ ନିଜେ ଆସିଗଲେ, ଆଉ କ'ଣ ବା ମାଗିବାକୁ ବାକି ରହିଗଲା ? ହେ ନାଥ ! ମୁଁ ତ ଏହି କାମନା କରୁଛି ଯେ, ଏଣିକି ମୋ ମନରେ ଯୋଗକ୍ଷେମର କାମନା ନ ରହୁ ଏବଂ ଏକମାତ୍ର ଆପଣଙ୍କ ଠାରେ ହିଁ ମୋର

ଅନନ୍ୟ ବିଶୁଦ୍ଧ ପ୍ରେମ ରହୁ ।'' ଭଗବାନ୍ 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ ' ତା'ପରେ ବ୍ରାହ୍ମଣପତ୍ନୀ ମଧ୍ୟ ପ୍ରସାଦ ସେବନ କଲେ ।

ସେପଟେ ଯେଉଁଦିନଠାରୁ ସାନଭାଇମାନେ ନିଜ ବଡ଼ଭାଇ ଭଗବଦ୍-ଭକ୍ତ ବ୍ରାହ୍ମଣଙ୍କୁ ପୃଥକ୍ କରିଦେଲେ, ସେହିଦିନଠାରୁ ସେମାନଙ୍କର ଅବସ୍ଥା ଖରାପ ଆଡ଼କୁ ଗତି କରିବାକୁ ଲାଗିଲା । ଦାରିଦ୍ର୍ୟ ହେତୁ ସେମାନଙ୍କୁ ଅତ୍ୟନ୍ତ ଦୁଃଖମୟ ଜୀବନ ଯାପନ କରିବାକୁ ପଡ଼ିଲା । ସେମାନଙ୍କର ଅବସ୍ଥା ଏତେ ଖରାପ ହୋଇଗଲା ଯେ, ସେମାନଙ୍କୁ କେଉଁଠାରୁ କିଛି ଉଧାର ମଧ୍ୟ ମିଳିଲା ନାହିଁ, କି ମାଗିଲେ ବି କେହି କିଛି ଦେଲେ ନାହିଁ । ସେମାନେ ଶୁଣିବାକୁ ପାଇଲେ ଯେ, ସେମାନଙ୍କ ବଡ଼ଭାଇ ବଡ଼ ଧନୀ ହୋଇଯାଇଛନ୍ତି ଏବଂ ତାଙ୍କ ଘରେ ସବୁବେଳେ ଭିକ୍ଷୁକମାନଙ୍କର ଭିଡ଼ ଲାଗିଛି । ତାଙ୍କ ଦ୍ୱାରରୁ କେହି ନିରାଶ ହୋଇ ଫେରୁନାହାନ୍ତି । ସୁତରାଂ ସେ ଦୁହେଁ ନିଜ ଭାଇଙ୍କ ପାଖକୁ ଗଲେ । ପରମ ଭକ୍ତ ପଣ୍ଡିତ ମହାଶୟ ଭାଇମାନଙ୍କୁ ଆସିବାର ଦେଖି ସେମାନଙ୍କୁ ଆନନ୍ଦରେ କୋଳାଗ୍ରତ କଲେ ଏବଂ କୁଶଳ-ମଙ୍ଗଳ କଥା ପଗ୍ଚରିଲେ । ସେମାନେ କହିଲେ, ''ଆପଣଙ୍କ ପରି ସଜ୍ଜନଙ୍କ ଠାରୁ ଅଲଗା ହୋଇଯାଇଥିବା ଲୋକଙ୍କର ଆଉ ମଙ୍ଗଳ କେଉଁଠି ! ଆମେ ତ ମୁହଁ ଦେଖାଇବାକୁ ବି ଯୋଗ୍ୟ ନୋହୁଁ । ଏହା ସତ୍ତ୍ୱେ ଆପଣ ଆମ ଉପରେ ଦୟାପରବଶ ହୋଇ ଆମ ସହିତ ଯେଉଁ ପ୍ରେମପୂର୍ଣ୍ଣ ବ୍ୟବହାର କଲେ, ତାହା ଆପଣଙ୍କର ସୌହାର୍ଦ୍ଦ୍ୟ ଓ ମହାନତାର ପରିଚୟ ।'' ବଡ଼ଭାଇ କହିଲେ, ''ନା, ନା, ଭାଇ ! ଏପରି କୁହ ନାହିଁ । ଆମେ ତିନିଜଣଯାକ ସହୋଦର ଭାଇ । ଆମେ କ'ଣ କେବେ କୌଣସିପ୍ରକାରେ ଅଲଗା ହୋଇପାରିବା ! ଏହା ତ ବିଧାତାଙ୍କର ପରୀକ୍ଷା । ଆମେ ପୂର୍ବରୁ ଯେଉଁପରି ପ୍ରେମରେ ରହୁଥିଲେ, ବର୍ତ୍ତମାନ ମଧ୍ୟ ସେହିପରି ରହିବା ଉଚିତ । ଏହି ସଂସାରରେ ସହୋଦର ଭାଇଙ୍କ ପରି ନିଜର ହିତାକାଙ୍‌କ୍ଷୀ ଓ ପ୍ରେମୀ ଆଉ କିଏ ଅଛି ? ତୁମ୍ଭେମାନେ କୌଣସି ଲଜ୍ଜା ବା ପଶ୍ଚାତ୍ତାପ ନ କରି ଆଗ ପରି ପ୍ରେମଭାବ ପୋଷଣ କରିବା ଉଚିତ । ଆରେ ଭାଇ ! ଏ ଯାହାକିଛି ଐଶ୍ୱର୍ଯ୍ୟ ଦେଖୁଛ, ଏଥିରେ ମୋର କ'ଣ ଅଛି ? ଏସବୁ ତ ପରମ ମଙ୍ଗଳମୟ, ପରମ ଦୟାମୟ ଭଗବାନଙ୍କର ବିଭୂତି । ଯେ ଭଗବାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରନ୍ତି, ଭଗବାନ୍ ସବୁପ୍ରକାରେ ତାଙ୍କର ଯୋଗକ୍ଷେମ ବହନ କରନ୍ତି । ପିଲା ଯେପରି ମାତାପିତାଙ୍କ ଉପରେ ନିର୍ଭର କରି ନିଶ୍ଚିନ୍ତ ହୋଇ ବିଚରଣ କରେ ଏବଂ ମାତାପିତା ତା'ର ସବୁପ୍ରକାର ପାଳନ-ପୋଷଣ, ରକ୍ଷଣାବେକ୍ଷଣ କରନ୍ତି, ସେହିପରି, ନା, ନା, ତା'ଠାରୁ ବି ଅଧିକଭାବରେ

ଭଗବାନ୍ ନିଜ ଆଶ୍ରିତଜନଙ୍କର ଭରଣପୋଷଣ ଏବଂ ସଂରକ୍ଷଣ କରିଥାଆନ୍ତି । କେବଳ ସେତିକି ନୁହେଁ, ସେ ତ ସ୍ୱୟଂ ନିଜକୁ ତାଙ୍କ ପାଖରେ ସମର୍ପିଦିଅନ୍ତି । ଏଣୁ ତୁମ୍ଭେମାନେ–

*ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।*
*ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥*

–ଏହି ଶ୍ଳୋକରେ କୁହାଯାଇଥିବା ସତ୍ୟ ଉପରେ ଅଖଣ୍ଡ ବିଶ୍ୱାସ ରଖି ନିତ୍ୟ-ନିରନ୍ତର, ସଦା-ସର୍ବଦା ଭଗବାନଙ୍କର ଚିନ୍ତନ-ସ୍ମରଣ କରିବା ଉଚିତ ତଥା ଭଲରୂପେ ଅର୍ଥ ଓ ଭାବ ବୁଝି ପ୍ରତ୍ୟହ ଗୀତା ଅଧ୍ୟୟନ-ଅଧ୍ୟାପନ କରିବା ଏକାନ୍ତ ଆବଶ୍ୟକ ।

ତା'ପରେ ସେହି ଦୁଇଭାଇ ବଡ଼ଭାଇଙ୍କ ସହିତ ରହି ତାଙ୍କ ଆଜ୍ଞାନୁସାରେ ନିତ୍ୟ-ନିରନ୍ତର ଜପ, ଧ୍ୟାନ ତଥା ଗୀତାପାଠ କରିବାକୁ ଲାଗିଲେ ଏବଂ ଅଳ୍ପଦିନ ମଧ୍ୟରେ ଭଗବାନଙ୍କ ଠାରେ ଭକ୍ତି କରି ଭଗବତ୍ କୃପାରେ ଭଗବାନଙ୍କୁ ପ୍ରାପ୍ତ ହେଲେ ।

ଏହି କାହାଣୀଟି କେତେ ଦୂର ସତ୍ୟ, ତାହା କହିହେବ ନାହିଁ; କିନ୍ତୁ ଆମେ ଏଥିରୁ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ, ଭଗବାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇ ଚଳିଲେ, ଭଗବାନ୍ ଯୋଗକ୍ଷେମ ବହନ କରନ୍ତି । ସୁତରାଂ ଆମେ ମଧ୍ୟ ଏହି କଥାରେ ବିଶ୍ୱାସ ରଖି ଭଗବାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇଯିବା ଆବଶ୍ୟକ । ନିତ୍ୟ-ନିରନ୍ତର ନିରବଚ୍ଛିନ୍ନଭାବରେ ଭଗବାନଙ୍କୁ ନିଷ୍କାମଭାବରେ ଚିନ୍ତନ କରିବା ହେଉଛି ସବୁଠାରୁ ଶ୍ରେଷ୍ଠ କଥା । ଯୋଗକ୍ଷେମର କାମନା ମନରେ ପୋଷଣ ନ କରି ଭଗବାନଙ୍କ ଠାରେ କେବଳ ଅହେତୁକ ଅନାବିଳ ବିଶୁଦ୍ଧ ପ୍ରେମ ହେବା ନିମନ୍ତେ ବିଶେଷ ଯତ୍ନଶୀଳ ହେବା ଏକାନ୍ତ ପ୍ରୟୋଜନ । କିନ୍ତୁ ଯଦି ଯୋଗକ୍ଷେମର କାମନା ଜାଗ୍ରତ ହୁଏ, ତେବେ ପାରମାର୍ଥିକ ଯୋଗକ୍ଷେମର କାମନା କରାଯାଇ ପାରେ । ଅପ୍ରାପ୍ତ ବସ୍ତୁର ପ୍ରାପ୍ତିର ନାମ 'ଯୋଗ' ଏବଂ ପ୍ରାପ୍ତ ବସ୍ତୁର ସଂରକ୍ଷଣର ନାମ ହେଉଛି 'କ୍ଷେମ' । ପାରମାର୍ଥିକ ଯୋଗକ୍ଷେମର ଅଭିପ୍ରାୟ ହେଉଛି, ପରମାତ୍ମାଙ୍କ ପ୍ରାପ୍ତିପଥରେ ଆମେ ଯେତିକି ଅଗ୍ରସର ହୋଇଛୁ, ସେହି ପ୍ରାପ୍ତ ସାଧନାସଂପତ୍ତି ତ ଭଗବାନ୍ ରକ୍ଷା କରନ୍ତି ଏବଂ ଭଗବତ୍-ପ୍ରାପ୍ତିରେ ଯାହା ଅଭାବ ରହିଯାଇଛି, ଭଗବାନ୍ ତାହା ପୂରଣ କରିଦିଅନ୍ତି । ଭଗବାନ୍ ଏଭଳି ପ୍ରତିଶ୍ରୁତି ଦେଇଛନ୍ତି । ଏ ବିଷୟ ଉତ୍ତମରୂପେ ହୃଦୟଙ୍ଗମ

କରି ଏବଂ ଏଥିରେ ଦୃଢ଼ବିଶ୍ୱାସ ରଖି, ଭଗବାନଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରି ନିର୍ଭୟ ଓ ନିଶ୍ଚିନ୍ତ ହୋଇଯାଆନ୍ତୁ । ଭଗବତ୍-ଚିନ୍ତନ ବ୍ୟତୀତ ଅନ୍ୟ କୌଣସି ଚିନ୍ତାକୁ ମନରେ ସ୍ଥାନ ଦିଅନ୍ତୁ ନାହିଁ ।

ଯେଉଁମାନେ ସାଂସାରିକ ଯୋଗକ୍ଷେମ ନିମନ୍ତେ ଭଗବାନଙ୍କର ଭଜନ କରନ୍ତି, ସେମାନେ ଅବଶ୍ୟ ଭଜନହୀନ ବ୍ୟକ୍ତିଙ୍କ ଅପେକ୍ଷା ଅତ୍ୟୁତ୍ତମ; କାରଣ ଭଗବାନ୍ ଅର୍ଥାର୍ଥୀ, ଆର୍ତ୍ତ ଆଦି ଭକ୍ତଙ୍କୁ ମଧ୍ୟ ଉଦାର – ଶ୍ରେଷ୍ଠ ବୋଲି କହିଛନ୍ତି, ଯଥା–

*'ଉଦାରାଃ ସର୍ବ ଏବୈତେ' (ଗୀତା ୭।୧୮)*

ଏବଂ ଜ୍ଞାନୀ, ନିଷ୍କାମ ଓ ଅନନ୍ୟ ଭକ୍ତଙ୍କୁ ତ ସେ ନିଜର ସ୍ୱରୂପ ବୋଲି ପ୍ରକାଶ କରିଛନ୍ତି; କାରଣ ସେହି ନିଷ୍କାମ ଜ୍ଞାନୀଭକ୍ତଙ୍କର ଏକମାତ୍ର ଭଗବାନଙ୍କ ବ୍ୟତୀତ, ସତରେ, ଅନ୍ୟ କୌଣସି ଗତି ବା ଆଶ୍ରୟ ନାହିଁ !

ସୁତରାଂ ଆମେ ଭଗବାନଙ୍କର ନିଷ୍କାମ-ଜ୍ଞାନୀ ଅନନ୍ୟ ଭକ୍ତ ହୋଇଯିବା ଉଚିତ; କାରଣ ସେପରି ଭକ୍ତ ଭଗବାନଙ୍କର ଅତ୍ୟନ୍ତ ପ୍ରିୟ । ଭଗବାନ୍ କହିଛନ୍ତି–

***ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତେ ।***
***ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ ॥***

*(ଗୀତା ୭।୧୭)*

ଅର୍ଥାତ୍ ''ସେହି ଭକ୍ତମାନଙ୍କ ମଧ୍ୟରେ ମୋ'ଠାରେ ନିତ୍ୟ ଏକାନ୍ତଭାବରେ ସ୍ଥିତ ଏବଂ ଅନନ୍ୟ ପ୍ରେମଭକ୍ତି ରଖିଥିବା ଜ୍ଞାନୀଭକ୍ତ ହେଉଛନ୍ତି ଅତ୍ୟନ୍ତ ଉତ୍ତମ ; କାରଣ ମୋତେ ତତ୍ତ୍ୱତଃ ଜାଣିଥିବା ଜ୍ଞାନୀଙ୍କର ମୁଁ ଅତ୍ୟନ୍ତ ପ୍ରିୟ ଏବଂ ସେହି ଜ୍ଞାନୀ ମୋର ଅତ୍ୟନ୍ତ ପ୍ରିୟ ।''

***ହରି ଓଁ ତତ୍ ସତ୍***

~~ o ~~

# ୨. ନିଷ୍କାମଭାବ

ରାମୁ ଓ ଗୋପାଳ ଉଭୟେ ଥିଲେ ରାମପୁର ଗ୍ରାମର ବାସିନ୍ଦା ; ଉଭୟେ ଜାତିରେ ପାଲିଙ୍କିବାହକ । ଗୋପାଳ ଇଚ୍ଛାନଗରୀ ରାଜାଙ୍କ ପ୍ରଧାନମନ୍ତ୍ରୀଙ୍କ ପେସ୍କାରଙ୍କ ଘରେ ବାସନ ମାଜିବା, ଝାଡୁ କରିବା ଇତ୍ୟାଦି କାର୍ଯ୍ୟ କରେ । ସେ ରାମୁଠାରୁ ବୟସରେ ବଡ଼; କିନ୍ତୁ ସଂପର୍କୀୟ ଭାଇ । ରାମୁର ବାପା ଗାଆଁର ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ରାମୁ ପାଲିଙ୍କିବାହକ କୁଳରେ ଜନ୍ମ ହୋଇଥିଲେ ମଧ୍ୟ ବଡ଼ ବୁଦ୍ଧିମାନ୍ ଏବଂ ସାତ୍ତ୍ୱିକସ୍ୱଭାବର ମଣିଷ ଥିଲା । ତାଠାରେ ସ୍ୱଭାବତଃ ଅନେକ ସାତ୍ତ୍ୱିକ ଗୁଣ ଥିଲା । ରାମୁ–ହୃଦୟରେ ଭଗବଦ୍‌ଭକ୍ତି, ବିନୟ, ସନ୍ତୋଷ ଏବଂ ନିଷ୍କାମଭାବ ଆଦି ସଦ୍‌ଗୁଣ ବିକଶିତ ହୋଇଥିଲା । ତାର ଚେହେରା ମଧ୍ୟ ରାଜକୁମାର ପରି ସୁନ୍ଦର । ଗ୍ରାମର ସମସ୍ତେ ତାକୁ ସ୍ନେହ କରୁଥିଲେ । ସେହି ଗ୍ରାମରେ ରମାକାନ୍ତ ନାମରେ ଜଣେ ବୟୋଜ୍ୟେଷ୍ଠ ସମ୍ମାନନୀୟ ପଣ୍ଡିତ ମଧ୍ୟ ବାସ କରୁଥିଲେ । ସେ ବଡ଼ ସଂଯମଶୀଳ, ସଦାଗ୍ରହସଂପନ୍ନ, ଭଗବଦ୍-ଭକ୍ତ ଓ ବିଦ୍ୱାନ୍ ଥିଲେ । ସହରର ଉତ୍କୃଷ୍ଟ ଅଧ୍ୟାପକତ୍ୱ ତ୍ୟାଗ କରି ସେ ନିଃସ୍ୱାର୍ଥଭାବରେ ଗ୍ରାମର ପିଲାମାନଙ୍କୁ ପଢ଼ାଉଥିଲେ । ରାମୁ ମଧ୍ୟ ପନ୍ଦର ବର୍ଷ ବୟସ ପର୍ଯ୍ୟନ୍ତ ତାଙ୍କ ତତ୍ତ୍ୱାବଧାନରେ ରହି ଉତ୍ତମରୂପେ ବିଦ୍ୟାଭ୍ୟାସ କରିଥିଲା ଏବଂ ତାଙ୍କ ଠାରୁ ଅନେକ ସଦ୍‌ଗୁଣ ଶିକ୍ଷା କରି ସେସବୁ ଆୟତ୍ତ କରିଥିଲା ।

ରାମୁର ଗାଆଁ ରାମପୁର ଇଚ୍ଛାନଗରୀର ରାଜଧାନୀଠାରୁ ଅଳ୍ପ ଦୂରରେ । ଦିନେ ବଡ଼ିସକାଳୁ ରାମୁ ଗାଧୁଆପାଧୁଆ ସାରି ଘରୁ ବାହାରିପଡ଼ିଲା ଏବଂ ସିନ୍ଦୁରା ଫାଟୁ ଫାଟୁ ଯାଇ ଇଚ୍ଛାନଗରୀରେ ପହଞ୍ଚିଗଲା । ଖୋଜି ଖୋଜି ସେ ଗୋପାଳର ଘରେ ପହଞ୍ଚିଲା ଏବଂ ପହଞ୍ଚୁ ପହଞ୍ଚୁ ଗୋପାଳର ଗୋଡ଼ ଧରିପକାଇଲା । ଗୋପାଳ ସେହିମାତ୍ର ବିଛଣାରୁ ଉଠିଥାଏ । ରାମୁ ଏପରି କରିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା ଓ ବଡ଼ ଆନନ୍ଦ ଓ ଆଶ୍ଚର୍ଯ୍ୟରେ ରାମୁ ମୁହଁକୁ ଚାହିଁରହିଲା ।

ରାମୁ ଗୋପାଳର ପାଦ ଧରି କହିଲା, ''ଭାଇ ! ତୁମେ ଧନ୍ୟ !''

''ଆରେ ଭାଇ ! ତୁମେ ଆସିଲ; ବଡ଼ ଭଲ କଲ ! ଗାଆଁରେ ସବୁ କୁଶଳ ତ ? କିନ୍ତୁ ତୁମେ ମୋ ପାଦ କାହିଁକି ଧରିଲ ? ତୁମେ ତ ହିସାବରେ ମୋର ଭାଇ ।'' ଗୋପାଳ ପଛକୁ ଘୁଞ୍ଚିଆସି ଗୋଟିଏ ନିଃଶ୍ୱାସରେ ଏସବୁ କଥା କହିଗଲା ।

ରାମୁ ଗଦ୍‌ଗଦ କଣ୍ଠରେ କହିଲା, ''ଭାଇ ! ତୁମର ମହିମା ବା ମୁଁ କ'ଣ କହିବି ! ସତରେ ତୁମେ ଧନ୍ୟ !''

ଗୋପାଳ କୌତୁହଳବଶତଃ ପଚାରିଲା, ''ଭାଇ ! ମୁଁ ତ ହିସାବରେ ତୁମ ଘରର ଲୋକ; ପୁଣି ମୋର କାର୍ଯ୍ୟ ଆଡୁ ହିସାବ କଲେ, ମୁଁ ତ ମହାରାଜା ସାହେବଙ୍କ ପ୍ରଧାନମନ୍ତ୍ରୀଙ୍କ ପେସ୍କାରଙ୍କ ବାସନମଜା କାମ କରୁଥିବା ଜଣେ ସାମାନ୍ୟ ଚାକର; ଆଉ ମୁଁ ଧନ୍ୟ କିପରି ହୋଇଗଲି ?''

ରାମୁ ଗୋପାଳର ପାଦକୁ ଜାବୁଡ଼ିଧରି କହିଲା, ''ଭାଇ ! ସେଇଥିଲାଗି ତ ତୁମେ ଧନ୍ୟ ! ତୁମେ ତ ଜାଣିଛ, ମହାରାଜା ଜଣେ ଉଚ୍ଚକୋଟିର ମହାପୁରୁଷ । ସେ ବଡ଼ ଭକ୍ତ, ଜ୍ଞାନୀ ଓ ଯୋଗୀମହାତ୍ମା ।''

ରାମୁ ହାତରୁ ନିଜ ପାଦ ଛଡ଼ାଇ ନେଇ ଗୋପାଳ କହିଲା, ''ମହାରାଜା ସିନା ଏସବୁ ଗୁଣରେ ସଂପନ୍ନ; ସେଥିରେ ମୋର କ'ଣ ଅଛି ? ମୋ'ଠାରେ ତ କୌଣସି ଗୁଣ ନାହିଁ ।''

ରାମୁ ବଡ଼ ଆଦର ଓ ପ୍ରେମଭରା ଭାଷାରେ କହିଲା, ''ଭାଇ ! ଏପରି ମହାପୁରୁଷ ମହାରାଜାଙ୍କର ପ୍ରଧାନମନ୍ତ୍ରୀଙ୍କ ପେସ୍କାରଙ୍କ ଚାକର ହୋଇ ରହିବା କ'ଣ ସାଧାରଣ କଥା ? ଭାଗ୍ୟରେ ଥିଲେ ଏପରି କାମ ମିଳେ । ମୋତେ ଯଦି ଏପରି ଚାକିରି ଖଣ୍ଡେ ମିଳିଯାଆନ୍ତା, ମୁଁ ନିଜ ଜୀବନକୁ କୃତାର୍ଥ ମଣନ୍ତି; ବରଂ ତୁମ ସେବାର ସୁଯୋଗ ମିଳିଗଲେ ବି ମୋ ଜୀବନ ଧନ୍ୟ ହୋଇଯିବ ।' ଏହା କହି ସେ ଗୋପାଳ ମୁହଁକୁ ଚାହିଁରହିଲା ।

ରାମୁ କଥା ଶୁଣି ଗୋପାଳ ଖୁସୀ ହୋଇଗଲା । ସେ କହିଲା, ''ଭାଇ ! ପେସ୍କାର ସାହେବ ମୋତେ କହୁଥିଲେ ଯେ, ତାଙ୍କର ଲୋକ ଦରକାର । ତୁମେ ଆସିଯାଇଛ ଏବଂ ତୁମେ ଚାହୁଁଛ ମଧ୍ୟ; ତେଣୁ ଆଜି ମୁଁ ତୁମକୁ ତାଙ୍କ ଘରେ କାମ କରିବାକୁ ରଖାଇଦେବି ।''

   

ରାମୁ ପେସ୍କାରଙ୍କ ଘରେ ଖୁବ୍ ମନ ଲଗାଇ କାମ କରିବାରେ ଲାଗିଗଲା । ମାସେ ପୂରିଯିବା ପରେ ଗୋପାଳ ହାତରେ ପଠାଯାଇଥିବା ଦରମା ରାମୁ ନ ନେବାରୁ ପେସ୍କାର ତାକୁ ଡକାଇ ପଚାରିଲେ,

"ତୁମେ ବଡ଼ ଉତ୍ସାହ, ଶ୍ରଦ୍ଧା, ପ୍ରେମ ଓ ତତ୍ପରତାର ସହିତ ଦିନରାତି କାମ କରିବାରେ ଲାଗିଛ । କାମ ମଧ୍ୟ ପୂର୍ବଚାକର ଅପେକ୍ଷା ଦୁଇଗୁଣ କରୁଛ । ଏତେ କାମ ତ କୌଣସି ଚାକର କେବେହେଲେ କରନ୍ତି ନାହିଁ । ସେଥିରେ ପୁଣି ଗତମାସ ତୁମେ ଦରମା ନେଇନାହଁ; ଏଥିନେଇ ମୁଁ ଅତ୍ୟନ୍ତ ଲଜ୍ଜିତ । ମୁଁ ଭାବୁଛି, ମାସକୁ ଏ ଯେଉଁ ଦଶ ଟଙ୍କା ଦରମା, ତାହା ଖୁବ୍ ଅଳ୍ପ ହୋଇଯାଉଛି ; ତେଣୁ ତୁମେ ଯେତିକି କହିବ, ମୁଁ ତୁମକୁ ମାସକୁ ସେତିକି ଟଙ୍କା ଦେବି ।"

ରାମୁକୁ ଶୁଦ୍ଧ, ସାତ୍ତ୍ୱିକ ଏବଂ ଦିବ୍ୟଗୁଣସଂପନ୍ନ ମହାରାଜାଙ୍କ ପ୍ରଧାନମନ୍ତ୍ରୀଙ୍କ ପେସ୍କାରଙ୍କ ନିକଟରେ ରହିବାର ସ୍ଥାନ ମିଳିଯାଇଥିବାରୁ ତାର ଆନନ୍ଦର ସୀମା ନ ଥାଏ । ତେଣୁ ସେ ଗର୍ବ, ମମତା ତଥା ଆସକ୍ତି ଏବଂ ସ୍ୱାର୍ଥ ତ୍ୟାଗ କରି ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତିର ସହିତ ନିଷ୍କାମଭାବରେ ସେବାରତ ରହିଥାଏ । ପେସ୍କାର ତା ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଯାଇଥାନ୍ତି । ରାମୁ ପେସ୍କାରଙ୍କ କଥା ଶୁଣି ଅତ୍ୟନ୍ତ ବିନୟରେ କହିଲା, "ଦରମା ଅଳ୍ପ ବୋଲି ଯେ ମୁଁ ନେଉନାହିଁ, ତାହା ପ୍ରକୃତ କାରଣ ନୁହେଁ ।"

ପେସ୍କାର ବିସ୍ମିତ ହୋଇଗଲେ । ରାମୁ କଥାକୁ ସେ ହଠାତ୍ ବିଶ୍ୱାସ କରିପାରିଲେ ନାହିଁ । ସେ ପଚାରିଲେ, "ତା'ହେଲେ ଏତେ ଅଧିକ ପରିଶ୍ରମ କାହିଁକି କରୁଛ ?"

ରାମୁ ନତମସ୍ତକ ହୋଇ କହିଲା, "ଆପଣ ଭଲରୂପେ ଜାଣନ୍ତି ଯେ, ଆମ ମହାରାଜା ବଡ଼ ଉଚ୍ଚକୋଟିର ମହାପୁରୁଷ । ସେ ଏକାଧାରରେ ଜଣେ ଯୋଗୀ, ଜ୍ଞାନୀ, ଈଶ୍ୱରଭକ୍ତ ଓ ସାକ୍ଷାତ୍ ମହାତ୍ମା । ଆପଣ ହେଉଛନ୍ତି ତାଙ୍କ ପ୍ରଧାନମନ୍ତ୍ରୀଙ୍କର ପେସ୍କାର । ମୋର ଏହି ପରମ ସୌଭାଗ୍ୟ ଯେ, ମୋତେ ଆପଣଙ୍କ ନିକଟରେ ଚାକିରି କରିବାର ସୁଯୋଗ ମିଳିଛି । ଏହାଠାରୁ ବଳି ଅଧିକ ଦରମା ଆଉ କ'ଣ ବା ହୋଇପାରେ ?"

ପେସ୍କାର ଉତ୍ସାହର ସହିତ ପଚାରିଲେ, "ତୁମେ ଯେଉଁପରି କହୁଛ, ରାଜା ସାହେବ ତ ନିଶ୍ଚୟ ସେହିପରି ; ସେଥିରେ ତିଳେମାତ୍ର ସନ୍ଦେହ ନାହିଁ; କିନ୍ତୁ ମୁଁ ତ ଜଣେ ସାଧାରଣ ମନୁଷ୍ୟ । ତାଙ୍କ ଠାରେ ଯେଉଁ ସଦ୍‌ଗୁଣରାଶି ରହିଛି, ସେଭିତରୁ

କୌଣସି ଗୋଟିଏ ବି ସଦ୍‌ଗୁଣ ମୋ'ଠାରେ ନାହିଁ । ମୋ ପାଖରେ ଚାକିରି କରି ତୁମର କି ଲାଭ ?''

ରାମୁ ବଡ଼ ସରଳଭାବରେ ନିଜ ମନଭିତରର ସତ କଥାଟି ପ୍ରକାଶ କରି କହିଦେଲା, ''ଆପଣ ହେଉଛନ୍ତି ତାଙ୍କ ପ୍ରଧାନମନ୍ତ୍ରୀଙ୍କର ପେସ୍କାର । ମୁଁ କେଉଁଠି ଓ ମୋ ଭାଗ୍ୟରେ ଆପଣଙ୍କ ଭଳି ମହାପୁରୁଷଙ୍କର ସେବା କେଉଁଠି ! ଭଗବାନଙ୍କ ସେବା ତ ଦୂରର କଥା, ତାଙ୍କ ଆଶ୍ରିତ ଭକ୍ତଜନଙ୍କର ଦାସାନୁଦାସଙ୍କର ଦାସାନୁଦାସଙ୍କ ସେବା କରିବାର ସୁଯୋଗ ମିଳିବା ବି ବହୁତ ବଡ଼ ସୌଭାଗ୍ୟ; କାରଣ ତାଙ୍କ ସଂପର୍କରୁ କେବେ ନା କେବେ ଭଗବଦ୍ ପ୍ରେମୀ ମହାପୁରୁଷଙ୍କର ଦର୍ଶନ ମିଳିଯାଇ ପାରେ । ସେହିପରି ଆପଣଙ୍କ ସେବା କରି କରି ମୋତେ କେତେବେଳେ ସେହି ଭଗବଦ୍‌ଭକ୍ତ ମହାରାଜାଙ୍କ ନିକଟତମ ସଂପର୍କରେ ରହୁଥିବା ପ୍ରଧାନମନ୍ତ୍ରୀଙ୍କ ଦର୍ଶନ ମଧ୍ୟ ମିଳିଯିବ ।''

ପେସ୍କାର ରାମୁର ଏହି ପବିତ୍ର ଭାବନାରେ ମୁଗ୍ଧ ହୋଇଗଲେ । ସେ କହିଲେ, ''ପ୍ରଧାନମନ୍ତ୍ରୀଙ୍କ ଦର୍ଶନ ପାଇଁ ତୁମେ ଚିନ୍ତା କର ନାହିଁ । ମୁଁ କାଲି ତୁମକୁ ତାଙ୍କ ଦର୍ଶନ କରାଇଦେବି । ପ୍ରଧାନମନ୍ତ୍ରୀ ସକାଳ ସାଢ଼େ ଆଠଟାବେଳେ ବିଶ୍ରାମାଳୟକୁ ଆସନ୍ତି ଏବଂ ମୁଁ ଯାଇ ସେଠାରେ ଆଠଟାବେଳେ ପହଞ୍ଚେ । ତୁମେ ନଅଟାବେଳେ ଗିଲାସେ ପାଣି ଓ କପେ ଚାହା ନେଇ ସେଠାକୁ ଆସିଯିବ । ହଁ, ତୁମ ଦରମା ପାଇଁ ତୁମେ ଯେତେ ଟଙ୍କା କହିବ, ମୁଁ ତାହା ତୁମ ଘରକୁ ପଠାଇଦେବି ।''

''ମୋର ଟଙ୍କାର ଆବଶ୍ୟକତା ନାହିଁ । ଘରକାମ ତ କୌଣସିପ୍ରକାରେ ଚାଲିଯାଉଛି । ପ୍ରଧାନମନ୍ତ୍ରୀଙ୍କ ଦର୍ଶନରେ ହିଁ ମୋତେ ସବୁକିଛି ମିଳିଯିବ ।'' ରାମୁ ଅତ୍ୟନ୍ତ ବିନୀତ ହୋଇ ଟଙ୍କା ନେବାକୁ ମନା କରିଦେଲା ।

ପେସ୍କାର ରାମୁ ଆଡ଼କୁ ଚାହିଁ ରହିଥାଆନ୍ତି । ସେ ମନେ ମନେ ତାର ଉତ୍ତମ ସ୍ୱଭାବର ପ୍ରଶଂସା କରିବାକୁ ଲାଗିଲେ ।

   

ଗଦି ଉପରେ ବଡ଼ ତକିଆରେ ଆଉଜି ବସିଥିବା ପ୍ରଧାନମନ୍ତ୍ରୀ ହଠାତ୍ ଦରଜାକବାଟ ଆଡ଼କୁ ଚାହିଁଦେଲେ । ସେ ଲକ୍ଷ୍ୟ କଲେ ଯେ, ଜଣେ ଅଜଣା ନବଯୁବକ ହାତରେ ଗିଲାସ ଧରି ଅତ୍ୟନ୍ତ ମନ୍ତ୍ରମୁଗ୍ଧ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି । ମନେହେଲା, ସତେ ଯେପରି କୌଣସି ବ୍ୟକ୍ତି ଭଗବାନଙ୍କୁ ଦର୍ଶନ

କରୁଛନ୍ତି । ପ୍ରଧାନମନ୍ତ୍ରୀ ବହୁତ ଥର ତାଙ୍କୁ ଚାହିଁଲେ; ସେ ଦେଖିଲେ, ତାଙ୍କର ପଲକ ପଡୁନାହିଁ । ସେ ଅତୃପ୍ତ ନୟନରେ, ସତୃଷ୍ଣଦୃଷ୍ଟିରେ ପ୍ରଧାନମନ୍ତ୍ରୀଙ୍କ ଆଡ଼କୁ ଚାହିଁ ରହିଛନ୍ତି ।

ପ୍ରଧାନମନ୍ତ୍ରୀ ପେସ୍କାରଙ୍କୁ ପଚାରିଲେ, ‘‘ସେ କିଏ ? ସେ କାହିଁକି ସେଠାରେ ଠିଆ ହୋଇଛନ୍ତି ?’’

ପେସ୍କାର ଉତ୍ତର ଦେଲେ, ‘‘ଆଜ୍ଞା ! ସେ ଆପଣଙ୍କର ଭୃତ୍ୟ । ଆଜି ମୁଁ ଚାହା ନ ପିଇ ଚାଲିଆସିଥିଲି; ତେଣୁ ସେ ଏଠାକୁ ଚାହା ନେଇ ଆସିଛି ।’’

ପ୍ରଧାନମନ୍ତ୍ରୀ କହିଲେ, ‘‘ଠିକ୍ ଅଛି, ଆଗେ ଚାହା ପିଇନିଅ ।’’

ପେସ୍କାର ଚାହା ପିଇଲେ ଏବଂ ପୁଣି ତାଙ୍କ କାମରେ ଲାଗିଗଲେ । କିନ୍ତୁ ପ୍ରଧାନମନ୍ତ୍ରୀ ରାମୁର ମନମୁଗ୍ଧକର ଓ ଚିତ୍ତାକର୍ଷକ ପ୍ରେମଭରା ଦୃଷ୍ଟି ଦେଖି ଅତ୍ୟନ୍ତ ପ୍ରଭାବିତ ହୋଇଯାଇଥିଲେ । ସେ ମଝିରେ ମଝିରେ ଆକୃଷ୍ଟ ହୋଇ ରାମୁ ଆଡ଼କୁ ବାରମ୍ବାର ଚାହିଁବାରେ ଲାଗିଥା'ନ୍ତି । ରାମୁ ଚାହାବାସନ ମଜାମଜି କରି ଝାଡୁ ଧରି ସେହି ଘରଟି ଝାଡୁ କରିଦେଲା । ତା'ପରେ ପ୍ରଧାନମନ୍ତ୍ରୀଙ୍କ ଜୋତା ସଫା କରିବାରେ ଲାଗିଗଲା । ଏସବୁ କାର୍ଯ୍ୟ କରୁଥିବାବେଳେ ବି ସେ ମଝିରେ ମଝିରେ ପ୍ରଧାନମନ୍ତ୍ରୀଙ୍କ ଆଡ଼କୁ ଶ୍ରଦ୍ଧା ଓ ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଚାହୁଁଥିଲା ।

ପ୍ରଧାନମନ୍ତ୍ରୀ ପେସ୍କାରଙ୍କୁ ପଚାରିଲେ, ‘‘ଏ ପିଲାଟି ତ ବିନା ଆଦେଶରେ ଅତ୍ୟନ୍ତ ପ୍ରେମ ଓ ଉତ୍ସାହପୂର୍ବକ କାମ କରିବାରେ ଲାଗିଛି । ସେ କେତେ ଶୀଘ୍ର କାମ କରୁଛି ଏବଂ ତା କାମ କେଡ଼େ ପରିଷ୍କାର ନୁହେଁ ସତେ ! ତାକୁ କେତେ ଦରମା ଦେଉଛ ?’’

‘‘ଆଜ୍ଞା ! - - - - ସେ କାମ ତ ବହୁତ କରୁଛି ଏବଂ ବଡ଼ ସୁନ୍ଦରଭାବରେ କରୁଛି; କିନ୍ତୁ କିଛି ବି ଦରମା ନେଉନାହିଁ ।’’

ବିସ୍ମୟାଭିଭୂତ ହୋଇ ପ୍ରଧାନମନ୍ତ୍ରୀ ରାମୁକୁ ସଙ୍ଗେ ସଙ୍ଗେ ପାଖକୁ ଡକାଇଲେ ଏବଂ ପଚାରିଲେ, ‘‘ତୁମେ କିଛି ଦରମା ନ ନେଇ ଅତ୍ୟନ୍ତ ପ୍ରେମପୂର୍ବକ କାମ କରୁଛ; ଏହାର କାରଣ କ'ଣ, କହିଲ ?’’

ରାମୁ ଅତ୍ୟନ୍ତ ବିନମ୍ରତାର ସହିତ କହିଲା, ‘‘ଆଜ୍ଞା ! କେବଳ ଆପଣଙ୍କ ଦର୍ଶନ ଅଭିଳାଷରେ । ଆଜି ମୁଁ କୃତାର୍ଥ ହୋଇଗଲି ।’’

ପ୍ରଧାନମନ୍ତ୍ରୀ ପ୍ରସନ୍ନତାପୂର୍ବକ ରାମୁଙ୍କୁ ପଚାରିଲେ, ‘‘ବାପା ! ମୋ'ଠାରେ ଏପରି କି ଜିନିଷ ଅଛି ?’’

ରାମୁ ଅତ୍ୟନ୍ତ ପ୍ରେମ ଓ ବିନୟପୂର୍ବକ କହିଲା, ''ମନ୍ତ୍ରୀ ମହାଶୟ ! ଆପଣ ତ ଜାଣନ୍ତି ଯେ, ଆମ ମହାରାଜା ଅତି ଉଚ୍ଚକୋଟିର ମହାପୁରୁଷ । ସେ ଏକାଧାରରେ ଜଣେ ଯୋଗୀ, ଜ୍ଞାନୀ, ଭକ୍ତ ଓ ମହାତ୍ମା । ଆପଣ ଏଭଳି ପବିତ୍ରାତ୍ମା ମହାରାଜାଙ୍କର ପ୍ରଧାନମନ୍ତ୍ରୀ । ଆପଣଙ୍କ ପରି ମହାନୁଭବଙ୍କର ଦର୍ଶନ ମିଳିବା କ'ଣ ସାଧାରଣ କଥା ! ଯେ ପରମ ଭାଗ୍ୟବାନ, ତାଙ୍କୁ ହିଁ ଆପଣଙ୍କ ପରି ପୁରୁଷଙ୍କର ଦର୍ଶନ ମିଳିଥାଏ ।''

ଏପରି ପ୍ରେମଭରା ଅମୃତବୋଳା ବାଣୀ ଶୁଣି ପ୍ରଧାନମନ୍ତ୍ରୀଙ୍କ ହୃଦୟ ତରଳିଗଲା । ସେ ପ୍ରେମାଭିଭୂତ ହୋଇ ସଙ୍ଗେ ସଙ୍ଗେ କହିଲେ, ''ଯଦି ତୁମେ ଏପରି ଭାବୁଛ, ତେବେ ତୁମେ ମୋ ପାଖରେ ରହିପାର ।''

ରାମୁର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଅତ୍ୟନ୍ତ ଆନନ୍ଦିତ ହୋଇ ସେ କହିଲା, ''ଆପଣଙ୍କ ଚରଣର ସାମୀପ୍ୟ ଲାଭ କରି ମୁଁ ନିଜକୁ ପରମ ସୌଭାଗ୍ୟଶାଳୀ ମଣିବି ।''

ପ୍ରଧାନମନ୍ତ୍ରୀ ପେସ୍କାରଙ୍କ ଆଡ଼କୁ ଚାହିଁ କହିଲେ, 'ଭାଇ ! ୟାଙ୍କୁ ତ ମୁଁ ନିଜ ପାଖରେ ରଖିବାକୁ ଚାହୁଁଛି ।'

'ଆପଣ ଆନନ୍ଦରେ ରଖିନିଅନ୍ତୁ ।' ଏହା କହି ପେସ୍କାର ନିଜର ସମ୍ମତି ପ୍ରଦାନ କରିଦେଲେ ।

   

ପ୍ରଧାନମନ୍ତ୍ରୀ ଅତ୍ୟନ୍ତ ସ୍ନେହପୂର୍ବକ କହିଲେ, ''ତୁମେ ମୋ ପାଖରେ କାମ କରିବାର ବହୁତ ଦିନ ହୋଇଗଲାଣି । ତୁମେ ଯେଉଁ ପ୍ରେମ ଓ ଉତ୍ସାହପୂର୍ବକ କର୍ତ୍ତବ୍ୟକର୍ମ କରୁଛ, ଜଣେ ସାଧାରଣ ଭୃତ୍ୟ ସେପରି କରିବ ନାହିଁ; କିନ୍ତୁ ଆଜି ପର୍ଯ୍ୟନ୍ତ ତୁମେ କିଛି ହେଲେ ଦରମା ନେଲ ନାହିଁ ; ଏଥିପାଇଁ ମୁଁ ବିଶେଷ ଲଜ୍ଜିତ । ଦରମା ଯଦି ନେବାକୁ ନ ଚାହୁଁଛ, ତା'ହେଲେ ଅନ୍ତତଃ ପାରିତୋଷିକରୂପେ କିଛି ଗ୍ରହଣ କର । ଦୁଇଶହ କି ଚାରିଶହ, ଯେତେ କହିବ, ମୁଁ ତୁମ ଘରକୁ ତାହା ପଠାଇଦେବି ।''

ରାମୁ ଜଣେ ଶ୍ରଦ୍ଧାଳୁ ଭକ୍ତଙ୍କ ପରି ଉତ୍ତର ଦେଲା, ''ଘର ତ କୌଣସିପ୍ରକାରେ ଚଳିଯାଉଛି, ମଣିମା ! ଟଙ୍କାର ଆବଶ୍ୟକତା ନାହିଁ ।''

ପ୍ରଧାନମନ୍ତ୍ରୀ ଅନୁରୋଧ କରି କହିଲେ, ''ମୁଁ ତୁମର ସେବା ନିମନ୍ତେ ବଡ଼ କୃତଜ୍ଞ ଏବଂ ତୁମର କିଛି ପ୍ରତ୍ୟୁପକାର କରିବାକୁ ଚାହୁଁଛି । ତୁମେ ଯଦି ଘରକୁ ଟଙ୍କା ପଠାଇବାକୁ ଚାହୁଁନା, ତେବେ ଆଉ କିଛି ଜିନିଷ କଥା କୁହ, ମୁଁ ତୁମ ଘରକୁ ପଠାଇବାର ବ୍ୟବସ୍ଥା କରିଦେବି ।''

ରାମୁ ନିଜର ମନୋଭାବ ପ୍ରକାଶ କରି କହିଲା, "ଏପରି କହି ଆପଣ ମୋତେ ଲଜ୍ଜିତ କରନ୍ତୁ ନାହିଁ । ଆପଣଙ୍କ ସେବା ହିଁ ମୋର ସବୁଠାରୁ ବଡ଼ ଉପହାର; କାରଣ ଆପଣ ଜଣେ ମହାପୁରୁଷଙ୍କର ପ୍ରଧାନମନ୍ତ୍ରୀ ଏବଂ ଦେଶର ପରମ ସେବକ । ମୋ ପକ୍ଷରେ ତ ଆପଣଙ୍କ ଦର୍ଶନ ମଧ୍ୟ ଦୁର୍ଲଭ ଥିଲା । ଆପଣ ଆପଣଙ୍କ ସେବାର ସୌଭାଗ୍ୟ ଦେଇ ମୋତେ ଚିରକାଳ ପାଇଁ ଋଣୀ କରିଦେଇଛନ୍ତି । ଆପଣଙ୍କ ସେବା କରୁ କରୁ ଯଦି କେବେ ମୋର ପରମ ସୌଭାଗ୍ୟ ପହଞ୍ଚିଯିବ, ତେବେ ଆପଣଙ୍କ କୃପାରୁ ମହାରାଜାଙ୍କ ଦର୍ଶନ ବି ମିଳିଯିବ ।"

ପ୍ରଧାନମନ୍ତ୍ରୀ ଆଗ୍ରହସହକାରେ କହିଲେ, "ରାଜା ସାହେବଙ୍କ ଦର୍ଶନ ପାଇଁ ଚିନ୍ତିତ ହୁଅ ନାହିଁ; କାଲି ମୁଁ ତୁମକୁ ତାଙ୍କ ଦର୍ଶନ କରାଇଦେଇ ପାରିବି । ମୁଁ ଦରବାରକୁ ବାରଟାବେଳେ ଯାଏ ଓ ରାଜାସାହେବ ଦରବାରକୁ ଗୋଟାଏବେଳେ ଆସନ୍ତି । କାଲି ମଙ୍ଗଳବାର ବ୍ରତ । ତୁମେ ତ ଜାଣିଛ, ମୁଁ ମଙ୍ଗଳବାର ଦିନ କିଛି ନ ଖାଇ ଦରବାରକୁ ଯାଏ ଏବଂ ମୋ ପାଇଁ ଫଳାହାର ସେଠାରେ ପହଞ୍ଚାଇ ଦିଆଯାଏ । ତୁମେ କାଲି ଦୁଇଟାବେଳେ ଫଳାହାର ନେଇ ସେଠାକୁ ଆସିବ; କିନ୍ତୁ ଘରକୁ କିଛି ଟଙ୍କା ଅବଶ୍ୟ ପଠାଇଦିଅ ।"

ରାମୁ ଶ୍ରଦ୍ଧାପୂର୍ବକ ନତମସ୍ତକ ହୋଇ କହିଲା, "ମୁଁ ଆପଣଙ୍କ ନିକଟରେ ଚିରଋଣୀ, ମଣିମା ! ମୋର ଟଙ୍କାର ଆବଶ୍ୟକତା ନାହିଁ ।"

   

ରାଜାଙ୍କର ଦୃଷ୍ଟି ଆନନ୍ଦସାଗରରେ ନିମଗ୍ନ ରାମୁ ଉପରେ ପଡ଼ିଗଲା । ସେ ତା'ଠାରେ ଅସାଧାରଣ ଆନନ୍ଦ ଥିବା ଅନୁଭବ କଲେ । ରାମୁ ଅପଲକ ନୟନରେ ରାଜା ସାହେବଙ୍କ ଆଡ଼କୁ ଚ୍ହିଁରହିଥାଏ ଏବଂ ଆନନ୍ଦରେ ବିହ୍ୱଳ ହୋଇଯାଉଥାଏ । ଏକଥା ସେ ଉତ୍ତମରୂପେ ଜାଣିଗଲେ । ସେ ପ୍ରଧାନମନ୍ତ୍ରୀଙ୍କୁ ପଚ୍ରିଲେ, "ଏ କିଏ ? ଏଠାରେ କାହିଁକି ଠିଆ ହୋଇଛନ୍ତି ?"

ପ୍ରଧାନମନ୍ତ୍ରୀ କହିଲେ, "ମଣିମା !ସେ ଆପଣଙ୍କର ସେବକ । ଆଜି ମଙ୍ଗଳବାର, ତେଣୁ ଫଳାହାର ଧରି ଆସିଛି ।"

ରାଜା ଆଦେଶ ଦେଲେ, "ଠିକ୍ ଅଛି; ତୁମେ ପ୍ରଥମେ ଫଳାହାର କରିନିଅ ।"

ପ୍ରଧାନମନ୍ତ୍ରୀ ଅନ୍ୟ ସ୍ଥାନକୁ ଯାଇ ଫଳାହାର କଲେ ଏବଂ ପୁଣି ଫେରିଆସି ନିଜ କାର୍ଯ୍ୟରେ ଲାଗିଗଲେ । ରାମୁ ଅଇଁଠାବାସନ ସଫା କରିଦେଇ ପ୍ରଧାନମନ୍ତ୍ରୀ ଓ ମହାରାଜାଙ୍କ ଜୋତା ସଫା କରିବାରେ ଲାଗିଗଲା । ଏସବୁ କରିବାବେଳେ

ବି ସେ ମହାରାଜାଙ୍କ ଆଡ଼କୁ ଗ୍ଟହିଁ ଆନନ୍ଦରେ ବିହ୍ୱଳ ହୋଇଯାଉଥିଲା; ମନ୍ତ୍ରମୁଗ୍ଧ ହୋଇଯାଉଥିଲା । ମହାରାଜା ତାର ସେହି ଅବସ୍ଥା ଲକ୍ଷ୍ୟ କଲେ ।

ରାଜା ପ୍ରଧାନମନ୍ତ୍ରୀଙ୍କୁ ପଗ୍ଚରିଲେ, "ଯାକୁ କେତେ ଦରମା ଦିଆଯାଉଛି ?"

ପ୍ରଧାନମନ୍ତ୍ରୀ ଉତ୍ତରରେ କହିଲେ, "ମଣିମା ! ସେ କାମ ତ ବଡ଼ ତତ୍ପରତା ଓ ପ୍ରେମ ତଥା ଉତ୍ସାହପୂର୍ବକ କରୁଛି; କିନ୍ତୁ ଦରମା ଦେଲେ କିଛି ନେଉନାହିଁ ।"

ମହାରାଜା ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସେ ରାମୁକୁ ଡକାଇ କହିଲେ, "ତୁମେ କିଛି ନ ନେଇ ଏତେ ପ୍ରେମ ଓ ଉତ୍ସାହରେ କାମ କରୁଛ; ଏହାର କାରଣ କ'ଣ ?"

ରାମୁ ଗଦ୍‌ଗଦ କଣ୍ଠରେ କହିଲା, "ମଣିମା ! କିଛି ନେଉନାହିଁ କିପରି ? ତାଙ୍କରି କୃପାରୁ ତ ଆଜି ମୁଁ ମଣିମାଙ୍କ ପରି ଅନୁପମ ମହାପୁରୁଷଙ୍କ ଦର୍ଶନ ପାଇ କୃତକୃତ୍ୟ ହୋଇଗଲି । ମୋର ପରମ ସୌଭାଗ୍ୟ ଯେ, ମୁଁ ଆଜି ମଣିମାଙ୍କ ଦର୍ଶନ ପାଇପାରିଛି ।"

"ଏମିତି କି କଥା ଦେଖିଲ ଯେ, ତୁମେ ନିଜକୁ କୃତକୃତ୍ୟ ମଣୁଛ ?"

"ମଣିମା ହେଉଛନ୍ତି ମହାପୁରୁଷ । ମଣିମାଙ୍କ ପରି ଜଣେ ଯୋଗୀ, ଜ୍ଞାନୀ, ଭକ୍ତ ଓ ମହାତ୍ମାଙ୍କ ଦର୍ଶନ ବଡ଼ ଦୁର୍ଲଭ; ପରମ ସୌଭାଗ୍ୟ ଥିଲେ ହିଁ ଏପରି ମହାପୁରଷଙ୍କର ଦର୍ଶନ ମିଳେ । ଆଜି ମଣିମାଙ୍କ ଦର୍ଶନ ଲାଭ କରି ମୁଁ ନିଜକୁ ପରମ ଧନ୍ୟ ମଣୁଛି । ଆଜି ମୋର ଜନ୍ମ ସଫଳ ହୋଇଗଲା । ମଣିମାଙ୍କ କୃପାରୁ ମୁଁ ଆଜି ସତରେ କୃତାର୍ଥ ହୋଇଗଲି ।" ଏହା କହି ରାମୁ ମହାରାଜାଙ୍କ ପାଦ ଧରିପକାଇଲା ।

ରାଜା ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ, "ଯଦି ତୁମର ଇଚ୍ଛା ଥାଏ, ତେବେ ମୋ ପାଖରେ ତୁମେ ସଦା-ସର୍ବଦା ରହିପାର ।"

ରାମୁ ରାଜାଙ୍କ ପାଦତଳେ ପଡ଼ି କହିଲା, "ଏହା ତ ମୋ ପକ୍ଷରେ ପରମ ସୌଭାଗ୍ୟର କଥା । ଏହାଠାରୁ ବଳି ଅଧିକ ସୌଭାଗ୍ୟ ମୋ ପକ୍ଷରେ ଆଉ କ'ଣ ବା ହୋଇପାରେ !"

ରାଜା ପ୍ରଧାନମନ୍ତ୍ରୀଙ୍କୁ କହିଲେ, " ଏ ପିଲା ମୋ ପାଖରେ ରହୁ ।" ତାଙ୍କ ହୃଦୟରୁ ସ୍ନେହ ଉଛୁଳି ପଡ଼ିଲା । ପ୍ରଧାନମନ୍ତ୍ରୀ ନତମସ୍ତକ ହୋଇ ସମ୍ମତି ପ୍ରଦାନ କରିଦେଲେ ।

   

ରାଜା କହିଲେ, "ମୁଁ ତୁମର ସେବାରେ ବହୁତ ସନ୍ତୁଷ୍ଟ; କିନ୍ତୁ ତୁମେ ଟଙ୍କା ନେଉନାହଁ, କି କୌଣସି ଜିନିଷ ତୁମ ଘରକୁ ପଠାଇବାକୁ କହିଲେ ମନା

କରିଦେଉଛ । ମୁଁ ତୁମ ପାଖରେ କୃତଜ୍ଞ; ତୁମର ଯାହା ଇଚ୍ଛା, ତାହା କହ; ମୁଁ ତୁମର ସବୁ ଅଭିଳାଷ ପୂରଣ କରିବାକୁ ପ୍ରସ୍ତୁତ ।''

ରାମୁ ଉତ୍ତରରେ କହିଲା, ''ମହାରାଜ ଯେତେବେଳେ ଏ ନଗଣ୍ୟ ଛାର ଦାସ ଉପରେ ସନ୍ତୁଷ୍ଟ, ଜାଣନ୍ତୁ, ମୁଁ ସବୁକିଛି ପାଇଗଲି । ମୋର ଟଙ୍କା ଆବଶ୍ୟକ ନାହିଁ ।''

ରାଜା ପୁଣି ଥରେ ଆଗ୍ରହ ପ୍ରକାଶ କରି କହିଲେ, ''ମୁଁ ତୁମ ନିକଟରେ କୃତଜ୍ଞ । ମୋର ସନ୍ତୋଷ ପାଇଁ ତୁମକୁ କିଛି ନା କିଛି ନେବାକୁ ହେବ ।''

ରାମୁ ବଡ଼ ନମ୍ରକଣ୍ଠରେ କହିଲା, ''ଏପରି କହି ମୋତେ ଲଜ୍ଜିତ କରନ୍ତୁ ନାହିଁ । ମୋତେ ତ ମଣିମାଙ୍କ ସେବା ସମକ୍ଷରେ ଅନ୍ୟ ବସ୍ତୁ ଅତ୍ୟନ୍ତ ତୁଚ୍ଛ ମନେ ହେଉଛି । ଏତିକି ଛଡ଼ା ମୋର ଆଉ କିଛି ଲୋଡ଼ା ନାହିଁ । ତଥାପି ଯଦି ଆପଣ ଆଗ୍ରହ ପ୍ରକାଶ କରୁଛନ୍ତି ; ତେବେ ମୁଁ ଯାହା ମାଗିବି, ଆପଣଙ୍କୁ ତାହା ଦେବାକୁ ପଡ଼ିବ ।''

''ତୁମେ ଯାହା ମାଗିବ, ମୁଁ ତାହା ନିଶ୍ଚୟ ଦେବି ।'' ରାଜା ନିଶ୍ଚୟ କରିନେଇଥିଲେ ଯେ, ରାମୁ ମାଗିଲେ, ସମସ୍ତ ରାଜ୍ୟଟା ବି ତାକୁ ଆନନ୍ଦରେ ଦେଇଦେବେ ।

''ମୁଁ ସଦା-ସର୍ବଦା ମଣିମାଙ୍କର ଚରଣସେବାରେ ଲାଗିରହେ ଏବଂ ମୋତେ ମଣିମା କେବେ ବି କ୍ଷଣକ ପାଇଁ ମଧ୍ୟ ନିଜଠାରୁ ଅଲଗା ନ କରନ୍ତୁ ।'' ଶ୍ରଦ୍ଧା-ବିଗଳିତ ହୃଦୟରେ ରାମୁ ଏହା କହି ମହାରାଜାଙ୍କ ପାଦତଳେ ଲୋଟିଗଲା ।

''ଇଏ କେଉଁ ବଡ଼ କଥା ! ତୁମେ ତ ଅଧିକ ସମୟ ମୋ ପାଖରେ ରହୁଛ । ଆଉ କିଛି ମାଗ ।''

''ବାସ୍, ମୁଁ ଏତିକିମାତ୍ର ଚାହୁଁଛି ।''

''ମୋର କୌଣସି ଆପତ୍ତି ନାହିଁ । ତୁମେ ଖୁସିରେ ମୋ ପାଖରେ ରହ ।'' - ରାଜା କହିଦେଲେ ।

   

ସେହିଦିନୁ ନଅରରେ ରାମୁର ସମ୍ମାନ ବଢ଼ିଗଲା । ସମସ୍ତେ ଏଥର ତାକୁ ସମ୍ମାନ ଦେଇ କଥା କହିଲେ ।

''ରାତିରେ ଏହି ଶୟନକକ୍ଷରେ ମୋ ପଛେ ପଛେ କାହିଁକି ?''

''ମହାରାଜ ! ମୋତେ ସଦା-ସର୍ବଦା ଛାମୁଙ୍କ ପାଖରେ ରହିବାର ଆଜ୍ଞା ମିଳିସାରିଛି ।'' – ହାତ ଯୋଡ଼ି ରାମୁ ଉତ୍ତର ଦେଲେ ।

ମହାରାଜ କହିଲେ, ''ହଉ, ଆସ ।''

ରାଜା ମହାରାଣୀଙ୍କୁ କହିଲେ, "ତୁମର କୌଣସି ପୁତ୍ର ନାହାନ୍ତି । ବର୍ତ୍ତମାନ ମୁଁ ଏହାଙ୍କୁ ତୁମ ସେବା ନିମନ୍ତେ ପୁତ୍ରରୂପେ ଆଣିଛି ।"

"ଖୁବ୍ ଭଲ କଥା" !" – ଏହା କହି ରାଣୀ ରାମୁ ଆଡ଼କୁ ଚାହିଁଲେ । ତାର ଅତି ସୁନ୍ଦର ରମଣୀୟ ମନୋହର ମୁଖଶ୍ରୀକୁ ଚାହିଁ ରାଣୀଙ୍କ ନୟନରୁ ସ୍ନେହାଶ୍ରୁ ବୋହିଆସିଲା । ତାଙ୍କର ବାତ୍ସଲ୍ୟପ୍ରେମ ଉଚ୍ଛୁଳିପଡ଼ିଲା । ରାମୁ ମନ୍ତ୍ରମୁଗ୍ଧ ଶିଶୁଟିଏ ପରି ମହାରାଣୀଙ୍କ ଆଡ଼କୁ ଚାହିଁରହିଲା ।

   

ରାଜା ପ୍ରଧାନମନ୍ତ୍ରୀଙ୍କୁ କହିଦେଲେ, "ଏ ପର୍ଯ୍ୟନ୍ତ ତ ରାମୁ କାମ-ଦାମ ଦେଖାଚାହାଁ କରୁଥିଲେ; କିନ୍ତୁ ଆଜିଠାରୁ ସେ ସବୁ କାଗଜପତ୍ରରେ ଦସ୍ତଖତ୍ କରିବେ ଏବଂ ତାଙ୍କ ଦସ୍ତଖତ୍‌କୁ ମୋ ଦସ୍ତଖତ୍ ବୋଲି ବୁଝିବାକୁ ହେବ ।" ରାଜା ରାମୁଙ୍କ ସେବାରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ । ରାମୁଙ୍କର ବୁଦ୍ଧି ଥିଲା ତୀକ୍ଷ୍ଣ ଏବଂ ସେ ଥିଲେ ମହାରାଜଙ୍କର ଅନନ୍ୟସେବକ ତଥା ତାଙ୍କ ଗୁଣରାଶିର ସ୍ୱାଭାବିକ ଅଧିକାରୀ । ସୁତରାଂ ଅଳ୍ପଦିନ ମଧ୍ୟରେ ସେ ଜଣେ ସୁଯୋଗ୍ୟ ଅଧିକାରୀ ହୋଇଯାଇଥିଲେ । ଲେଖାପଢ଼ାରେ ମଧ୍ୟ ସେ ନିପୁଣ ଥିଲେ ।

ପ୍ରଧାନମନ୍ତ୍ରୀ ମହାରାଜଙ୍କ ଆଦେଶ ଶିରୋଧାର୍ଯ୍ୟ କଲେ । ଯାବତୀୟ କାଗଜପତ୍ରରେ ରାମୁଙ୍କର ଦସ୍ତଖତ ହେବାକୁ ଲାଗିଲା ।

କିଛିଦିନ ପରେ ମହାରାଜା ରାମୁଙ୍କୁ କହିଲେ, "ମୋର କୌଣସି ସନ୍ତାନ ନାହିଁ । ମୁଁ ତୁମକୁ ଯୁବରାଜ ପଦରେ ଅଭିଷିକ୍ତ କରିବାକୁ ଚାହେଁ ।" ସେତେବେଳକୁ ମହାରାଜା ରାମୁଙ୍କୁ ପୁତ୍ରସମ ସ୍ନେହ କରିବାକୁ ଆରମ୍ଭ କରିଦେଲେଣି ।

ରାମୁ ସେବାନିଷ୍ଠ ପୁତ୍ରଙ୍କ ପରି କହିଲେ, "ମଣିମା ! ମୋତେ ଲଜ୍ଜିତ କରନ୍ତୁ ନାହିଁ । ମୁଁ ମଣିମାଙ୍କର ଚରଣସେବା ତ୍ୟାଗ କରିପାରିବି ନାହିଁ । ସେହି ମହାନ୍ ଲାଭ ତୁଳନାରେ, ଏହି ରାଜ୍ୟସୁଖ ଅତି ତୁଚ୍ଛ ।"

ରାଜା ତାଙ୍କ କଥା ରକ୍ଷା କଲେ ଏବଂ ଆଜ୍ଞା ଦେଇ ତାଙ୍କ ଦ୍ୱାରା ରାଜକାର୍ଯ୍ୟ କରାଇବାକୁ ଲାଗିଲେ ।

ଦିନେ ଦରବାରରେ ପ୍ରଧାନମନ୍ତ୍ରୀଙ୍କ ପାଦ ଧରି ରାମୁ କହିଲେ, "ମୁଁ ତ ଆପଣଙ୍କର ଜଣେ ସେବକମାତ୍ର । ଏସବୁ ଆପଣଙ୍କ କୃପାରୁ ହିଁ ପ୍ରାପ୍ତ ହୋଇଛି ।"

ମନ୍ତ୍ରୀ କହିଲେ, " ଆହା ! ଆପଣ ହେଉଛନ୍ତି ମହାରାଜାଙ୍କର ପ୍ରତିନିଧି ! ଆପଣ ରାଜସିଂହାସନର ଅଧିକାରୀ । ମୋତେ ଲଜ୍ଜିତ କରନ୍ତୁ ନାହିଁ ।" ସଂକୁଚିତ ହୋଇ ପ୍ରଧାନମନ୍ତ୍ରୀ କୌଣସିପ୍ରକାରେ ରାମୁଙ୍କୁ ସିଂହାସନରେ ବସାଇବାକୁ ସଫଳ ହୋଇଗଲେ ।

ସେତେବେଳକୁ ପେସ୍କାର୍ କୌଣସି କାର୍ଯ୍ୟରେ ଦରବାରକୁ ଆସିଥିଲେ । ତାଙ୍କୁ ଦେଖି ରାମୁ କହିଲେ, "ମୁଁ ତ ଆପଣଙ୍କ ଚରଣର କିଙ୍କରମାତ୍ର; ଆପଣଙ୍କ କୃପାରୁ ହିଁ ମୋତେ ଏସବୁ ପ୍ରାପ୍ତ ହୋଇଛି ।" ଏପରି କହି ରାମୁ ପେସ୍କାରଙ୍କ ଗୋଡ଼ ଧରିପକାଇ ତାଙ୍କୁ ସିଂହାସନରେ ବସାଇବା ପାଇଁ ନିଜ ଆଡ଼କୁ ଟାଣିବାକୁ ଲାଗିଲେ ।

ପେଶ୍କାର ବିଚରା ବଡ଼ କଷ୍ଟରେ ରାମୁଙ୍କୁ ସିଂହାସନରେ ବସାଇଦେଇ, ଯାଇ ନିଜ ସ୍ଥାନରେ ବସିଲେ ।

ଏତିକିବେଳେ ପେଶକାର୍ଙ୍କ ଚାକର ଗୋପାଳ ସେଠାକୁ ଆସିଥାଏ । ରାମୁ ସିଂହାସନରୁ ଓହ୍ଲାଇ ଗୋପାଳ ପାଖକୁ ଦୌଡ଼ିଗଲେ ଏବଂ ତାକୁ ନମ୍ରତାପୂର୍ବକ କହିଲେ, "ଭାଇ ! ତୁମରି କୃପାରୁ ହିଁ ମୋତେ ଏହି ସିଂହାସନ ମିଳିଛି । ଆସ, ସିଂହାସନରେ ବସ ।"

"ପେଶ୍କାର ସାହେବ ଓ ପ୍ରଧାନମନ୍ତ୍ରୀ ସାହେବଙ୍କ ସମକ୍ଷରେ ମୁଁ ଉଚ୍ଚ ଆସନରେ ବସିବାକୁ ଯୋଗ୍ୟ ନୁହେଁ । ମୁଁ ଏହା କଦାପି କରିପାରିବି ନାହିଁ । ଆପଣ ମୋତେ ଲଜ୍ଜିତ କରନ୍ତୁ ନାହିଁ ।" ଏପରି କହି ପେଶ୍କାରଙ୍କ ଚାକର ଗୋପାଳ ସେଇଠି ତଳେ ବସିରହିଲା । ରାମୁଙ୍କୁ ଲେଶମାତ୍ର ଅହଂକାର ସ୍ପର୍ଶ କରି ନ ଥିଲା ।

   

"ତୁମେ ବିନୟର ମୂର୍ତ୍ତିମନ୍ତ ସ୍ୱରୂପ । ଅହମିକା ଓ ମମତା ତୁମକୁ ସ୍ପର୍ଶ କରିପାରି ନାହିଁ । ଅତ୍ୟନ୍ତ ଛୋଟ କର୍ମଚାରୀଙ୍କ ଠାରୁ ଆରମ୍ଭ କରି ଉଚ୍ଚ ପଦାଧିକାରୀଙ୍କ ପର୍ଯ୍ୟନ୍ତ ସମସ୍ତେ ତୁମ ଉପରେ ପ୍ରସନ୍ନ । ତୁମଠାରେ ଶାସନଭାର ଗ୍ରହଣ କରିବାର ଅପୂର୍ବ ଯୋଗ୍ୟତା ଓ କ୍ଷମତା ରହିଥିବା ମଧ୍ୟ ଦେଖାଯାଉଛି । ତେଣୁ ତୁମେ ମୋ କଥା ମାନି ରାଜପଦ ସ୍ୱୀକାର କର । ବର୍ତ୍ତମାନ ମୁଁ ଏକାନ୍ତବାସ କରିବାକୁ ଚାହୁଁଛି ।" – ରାଜା ରାମୁଙ୍କୁ ଏପରି ପ୍ରସ୍ତାବ ଦେଲେ ।

"ମଣିମା ସଦାସର୍ବଦା ନିଜ ଚରଣ ସମୀପରେ ରଖିବାକୁ ମୋତେ ବର ଦେଇସାରିଛନ୍ତି । ତେଣୁ ମୋତେ ସେଥିରୁ କ୍ଷଣଟିଏ ବି କିପରି ବଞ୍ଚିତ କରିପାରିବେ ? ରାଜପଦ ନିମନ୍ତେ ମୋର ଆଦୌ ଅଭିଳାଷ ନାହିଁ । ମଣିମା ! ଏପରି କହି ମୋତେ ଲଜ୍ଜିତ କରନ୍ତୁ ନାହିଁ । ମୁଁ ମଣିମାଙ୍କ ଠାରୁ କ୍ଷଣକ ପାଇଁ ମଧ୍ୟ ଅଲଗା ରହିପାରିବି ନାହିଁ । ମୁଁ ରାଜପଦ ଗ୍ରହଣ କରିବାକୁ ସଂପୂର୍ଣ୍ଣ ଅସମର୍ଥ; ତେଣୁ କ୍ଷମାଭିକ୍ଷା କରୁଛି ।" – ରାମୁ ବିନୟ, ପ୍ରେମ ଓ ଦୃଢ଼ତାର ସହିତ ରାଜାଙ୍କୁ ନିଜର ନିଷ୍ପତ୍ତି ଶୁଣାଇଦେଲେ ।

"ମୋ ସହିତ ରହି ରାଜ୍ୟର ଶାସନଭାର ଗ୍ରହଣ କର ।" – ରାଜାଙ୍କୁ ବାଧ୍ୟ ହୋଇ ନିଜର ଇଚ୍ଛା ପରିବର୍ତ୍ତନ କରିବାକୁ ପଡ଼ିଲା ।

ରାମୁ ବର୍ତ୍ତମାନ ରାଜାଙ୍କ ସହିତ ରହି ରାଜ୍ୟର ଶାସନକାର୍ଯ୍ୟ ସମ୍ଭାଳିବାକୁ ଲାଗିଲେ ।

   

ପାଲିଙ୍କିବାହକ-କୁଳରେ ଜନ୍ମ ହୋଇଥିବା ରାମୁଙ୍କର ଏହି କଳ୍ପିତ କାହାଣୀ ଦୃଷ୍ଟାନ୍ତସ୍ୱରୂପ କୁହାଯାଇଛି । ପରମାର୍ଥ ବିଷୟରେ ସାଧକ ଏହିପରି ହେବା ଉଚିତ । ପରମାତ୍ମାଙ୍କ ପ୍ରାପ୍ତିମାର୍ଗରେ ଗ୍ଲୁଥିବା ସାଧକଙ୍କୁ ଏଠାରେ ରାମୁ ବୋଲି ବୁଝିବା ଉଚିତ । ପେସ୍କାରଙ୍କ ନିକଟରେ ଥିବା ଗୋପାଳକୁ ଭଗବାନଙ୍କ ଦାସର ଦାସାନୁଦାସ ବୋଲି ବୁଝିବା ଉଚିତ । ପେସ୍କାରଙ୍କୁ ଭଗବାନଙ୍କ ଦାସାନୁଦାସ ବୁଝିବା ଉଚିତ । ପ୍ରଧାନମନ୍ତ୍ରୀଙ୍କୁ ଭଗବାନଙ୍କର ଦାସ ଏବଂ ଇଚ୍ଛାନଗରୀର ମହାରାଜାଙ୍କୁ ସାକ୍ଷାତ୍ ଭଗବାନ୍ ବୋଲି ବୁଝିବା ଉଚିତ । ମହାରାଜଙ୍କର ଭକ୍ତି, ଜ୍ଞାନ, ଯୋଗ ଇତ୍ୟାଦିକୁ ଭଗବାନଙ୍କର ଗୁଣ ତଥା ପ୍ରଭାବ ବୋଲି ଜାଣିବା ଉଚିତ । ମହାରାଣୀଙ୍କୁ ଈଶ୍ୱରଙ୍କ ଶକ୍ତି ଦେବୀ ଭଗବତୀ ବୋଲି ବୁଝିବା ଉଚିତ । ରାମୁ ଯେଉଁ ଦରମାଠାରୁ ଆରମ୍ଭ କରି ରାଜପଦ ପର୍ଯ୍ୟନ୍ତ କିଛି ହେଲେ ଗ୍ରହଣ ନ କରି ନିଷ୍କାମଭାବରେ, ସ୍ୱାର୍ଥତ୍ୟାଗ କରି ତଥା ଶ୍ରଦ୍ଧାପୂର୍ବକ ଉତ୍ସାହର ସହିତ କାର୍ଯ୍ୟ କଲେ, ତାହାକୁ ସାଧନା ବୋଲି ବୁଝିବା ଉଚିତ । ତାଙ୍କର ଶ୍ରଦ୍ଧା, ଭକ୍ତି, ବିନୟପୂର୍ଣ୍ଣ ଅହଂକାରରହିତ ବ୍ୟବହାରକୁ ଆଦର୍ଶ ଶିକ୍ଷାଗ୍ରହ ବୋଲି ବୁଝିବା ଉଚିତ । ରାଜପଦକୁ ମୁକ୍ତି ଏବଂ ସଦାସର୍ବଦା ରାଜାଙ୍କ ନିକଟରେ ରହିବାକୁ ଉଚ୍ଚକୋଟିର ବିଶୁଦ୍ଧ ପ୍ରେମ ବୋଲି ବୁଝିବା ଆବଶ୍ୟକ ।

ଏହି ଦୃଷ୍ଟାନ୍ତରୁ ଆମେ ଶିକ୍ଷା ଗ୍ରହଣ କରିବା ଉଚିତ ଯେ, ଅହଂକାର, ମମତା, ଆସକ୍ତି ଓ ସ୍ୱାର୍ଥ ତ୍ୟାଗ କରି, ଶ୍ରଦ୍ଧା, ଭକ୍ତି ଓ ବିନୟପୂର୍ବକ ନିଷ୍କାମଭାବରେ ଭଗବାନଙ୍କର ଦାସାନୁଦାସଙ୍କ ସଙ୍ଗ ଓ ସେବାରେ ଲାଗିରହି ଭଗବାନଙ୍କର ଆଜ୍ଞା ପାଳନ କରିବାକୁ ହେବ ତଥା ମୁକ୍ତିକାମନା ନ କରି, ନିଷ୍କାମ-ପ୍ରେମଭାବରେ ଭଗବାନଙ୍କର ନିତ୍ୟସାମୀପ୍ୟରେ ରହି, ନିରବଚ୍ଛିନ୍ନଭାବରେ ଭଗବାନଙ୍କର ସ୍ମରଣ, କରି ସେବା କରିବାରେ ଆଗ୍ରହ ରଖିବାକୁ ହେବ ।

***ହରି ଓଁ ତତ୍ ସତ୍***

~~ 0 ~~

# ୩. ଗୀତାଶ୍ଳୋକର ଅର୍ଥ ଓ ରହସ୍ୟ ଉଦ୍‌ଘାଟନ

ଜଣେ ବିଦ୍ୱାନ୍ ବ୍ରାହ୍ମଣ ଥିଲେ । ସେ ସର୍ବଦା ସନ୍ତୋଷ ଓ ସଦାଗ୍ରହସଂପନ୍ନ ଜୀବନ ଯାପନ କରୁଥିଲେ । କିନ୍ତୁ ସେ ଥିଲେ ନିର୍ଦ୍ଧନ । ତାଙ୍କର ପତ୍ନୀ ଥିଲେ ଅତ୍ୟନ୍ତ ପତିବ୍ରତା, ସାଧ୍ୱୀ, ବିଦୁଷୀ, ତତ୍ତ୍ୱଜ୍ଞାନସଂପନ୍ନ ଓ ଜୀବନ୍ମୁକ୍ତ । ସେହି ଦେଶର ରାଜା ମଧ୍ୟ ଜଣେ ତତ୍ତ୍ୱଜ୍ଞାନୀ ଓ ଜୀବନ୍ମୁକ୍ତ ମହାତ୍ମା ଥିଲେ । ଦିନେ ବ୍ରାହ୍ମଣୀ ବିଚାର କଲେ, 'ମୋର ପତିଦେବ ହେଉଛନ୍ତି ଜଣେ ସନ୍ତୁଷ୍ଟ, ସଦାଗ୍ରହସଂପନ୍ନ ଓ ବିଦ୍ୱାନ୍ ବ୍ୟକ୍ତି । ତେଣୁ ସେ ନିଶ୍ଚୟ ମୁକ୍ତିର ଅଧିକାରୀ । ତାଙ୍କର ଯଦି ଆମ ଜୀବନ୍ମୁକ୍ତ ରାଜାଙ୍କ ସହିତ ସାକ୍ଷାତ ହୋଇଯାଏ, ତେବେ ସେ ମଧ୍ୟ ଶୀଘ୍ର ତତ୍ତ୍ୱଜ୍ଞାନୀ ଜୀବନ୍ମୁକ୍ତ ହୋଇଯାଇ ପାରିବେ ।' ଏପରି ବିଚାର କରି ସେ ସ୍ୱାମୀଙ୍କୁ ପ୍ରାର୍ଥନା କଲେ, "ହେ ନାଥ ! ଆଜିକାଲି ଆମ ଶରୀରନିର୍ବାହ ବଡ଼ କଷ୍ଟକର ହୋଇପଡ଼ିଲାଣି । ଆୟର କୌଣସି ଉପାୟ ଦେଖା ଯାଉନାହିଁ । ଦିନକୁ ଦିନ ଦାରିଦ୍ର୍ୟ ମାଡ଼ିଆସୁଛି । ଶୁଣୁଛି, ଏଠାକାର ରାଜା ବଡ଼ ସଦାଗ୍ରହୀ ଓ ଜୀବନ୍ମୁକ୍ତ ମହାପୁରୁଷ । ସେ ବ୍ରାହ୍ମଣମାନଙ୍କର ଉପଯୁକ୍ତ ଆଦରସତ୍କାର କରନ୍ତି; ସେ ପରମ ଉଦାର । ଯଦି ଆପଣ ଥରେ ତାଙ୍କୁ ସାକ୍ଷାତ୍ କରିପାରନ୍ତେ, ତେବେ ସେ ଆପଣଙ୍କର ଉଚିତ ସତ୍କାର କରନ୍ତେ । ଶାସ୍ତ୍ରବିଧି ଅନୁସାରେ ରାଜାଙ୍କୁ କିଛି ନ ମାଗିଲେ ମଧ୍ୟ, ସେ ଯଦି ସ୍ୱତଃପ୍ରବୃତ୍ତ ହୋଇ କିଛି ଦିଅନ୍ତି, ତେବେ ତାହା ଯେ ବ୍ରାହ୍ମଣଙ୍କ ପକ୍ଷରେ ଅମୃତତୁଲ୍ୟ ହୋଇଯିବ, ତାହା ତ ଆପଣ ଜାଣନ୍ତି ।"

ପଣ୍ଡିତ ମହାଶୟ କହିଲେ, "ତୁମେ ଯାହା କହୁଛ, ତାହା ଠିକ୍; କିନ୍ତୁ ଯେ ପର୍ଯ୍ୟନ୍ତ ମୁଁ କାହାର କୌଣସି ଉପକାର ନ କରିଛି, ସେ ପର୍ଯ୍ୟନ୍ତ ମୁଁ ନ ମାଗିଲେ ମଧ୍ୟ ତାଙ୍କ ଠାରୁ କୌଣସି ସ୍ୱେଚ୍ଛାକୃତ ଦାନ ଗ୍ରହଣ କରିବା ଓ ସେଥିରେ ଜୀବନନିର୍ବାହ କରିବା ମୋ ପକ୍ଷରେ ନିନ୍ଦାଜନକ ହେବ । ସୁତରାଂ ମୋତେ ଉପବାସ ରହିବାକୁ ପଡୁ ପଛେ, ମୁଁ ଏପରି କାର୍ଯ୍ୟ କରିବି ନାହିଁ ।"

ବ୍ରାହ୍ମଣୀ କହିଲେ, "ଆପଣ ହେଉଛନ୍ତି ବିଦ୍ୱାନ୍; ତେଣୁ ଯଥୋଚିତ ଉପଦେଶ ପ୍ରଦାନ କରି ଆପଣ ତାଙ୍କର ଉପକାର କରିପାରିବେ ।"

କଥାଟି ପଣ୍ଡିତ ମହାଶୟଙ୍କ ମନକୁ ପାଇଲା; କିନ୍ତୁ ରାଜାଙ୍କ ନିକଟକୁ ଯିବାକୁ ତାଙ୍କ ମନ ବଳୁ ନ ଥିଲା । ଶେଷରେ ପତ୍ନୀଙ୍କର ବିଶେଷ ଅନୁରୋଧରେ ସେ ତାଙ୍କ କଥାରେ ରାଜି ହୋଇ ରାଜସଭାକୁ ଗଲେ । ପଣ୍ଡିତ ମହାଶୟଙ୍କର ସଦ୍‌ଗୁଣ ଓ ସଦାଗ୍ୱରର ଖ୍ୟାତି ଦେଶସାରା ବ୍ୟାପିଯାଇଥିଲା । ରାଜା ପଣ୍ଡିତ ମହାଶୟଙ୍କର ଯଥୋଚିତ ଆଦରସତ୍କାର କଲେ । କୁଶଳମଙ୍ଗଳ ପ୍ରଶ୍ନୋତ୍ତର ପରେ ରାଜା ବହୁତ ସ୍ୱର୍ଣ୍ଣମୁଦ୍ରା ମଗାଇ ପଣ୍ଡିତ ମହାଶୟଙ୍କୁ ଉପହାର ସ୍ୱରୂପ ଦେଲେ ! ପଣ୍ଡିତ ମହାଶୟ ସେସବୁ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରି କହିଲେ, "ରାଜନ୍ ! ଆପଣ ବଡ଼ ଉଦାର, ଏ କଥା ମୁଁ ଜାଣେ; କିନ୍ତୁ ମୋର ନୀତି ଏହି ଯେ, ମୁଁ କାହାରି କିଛି ଉପକାର ନ କରି ତାଙ୍କ ଠାରୁ ଅଯାଚିତରୂପେ କୌଣସି ଧନ ଗ୍ରହଣ କରେ ନାହିଁ । ଆପଣ କୌଣସି କାର୍ଯ୍ୟ ଅର୍ପଣ କରନ୍ତୁ ଏବଂ ସେଥିରେ ଯଦି ମୁଁ ଆପଣଙ୍କୁ ସନ୍ତୋଷ ପ୍ରଦାନ କରିପାରେ, ତା'ପରେ ଯାଇ ଆପଣ କିଛି ଦେଲେ, ମୁଁ ତାହା ଗ୍ରହଣ କରିପାରେ ।" ରାଜା କହିଲେ, "ପଣ୍ଡିତ ମହାଶୟ ! ଖୁବ୍ ଭଲ କଥା । ଆପଣ ହେଉଛନ୍ତି ଜଣେ ସଦାଗ୍ୱରସଂପନ୍ନ ବିଦ୍ୱାନ୍ ବ୍ରାହ୍ମଣ । ମୁଁ ଆପଣଙ୍କ ଠାରୁ ଗୀତାର ତତ୍ତ୍ୱ-ରହସ୍ୟ ଶୁଣିବା ନିମନ୍ତେ ବିଶେଷ ଆଗ୍ରହୀ । ଆପଣ ଦୟା କରି ମୋତେ ଗୀତାର ଦ୍ୱାଦଶ ଅଧ୍ୟାୟର ଷୋଡ଼ଶ ଶ୍ଳୋକର ଭାବସମନ୍ୱିତ ତାତ୍ତ୍ୱିକ ଅର୍ଥ ସ୍ପଷ୍ଟରୂପେ ବୁଝାଇଦିଅନ୍ତୁ ।"

ପଣ୍ଡିତ ମହାଶୟ ପ୍ରଥମେ ଶ୍ଳୋକଟି ପଢ଼ିଲେ ଓ ତା'ପରେ ତା'ର ଶବ୍ଦାର୍ଥ ବୁଝାଇଲେ -

*ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ।*
*ସର୍ବାରମ୍ଭପରିତ୍ୟାଗୀ ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ ॥*

"ଯେ ଆକାଙ୍‌କ୍ଷାରହିତ, ବାହାରେ ଓ ଭିତରେ ଶୁଦ୍ଧ, ଦକ୍ଷ, ପକ୍ଷପାତରହିତ ଓ ଦୁଃଖରୁ ମୁକ୍ତ, ସେହି ସର୍ବାରମ୍ଭତ୍ୟାଗୀ, କର୍ତ୍ତୃତ୍ୱ-ଅଭିମାନରୁ ରହିତ ଭକ୍ତ ମୋର ଅତ୍ୟନ୍ତ ପ୍ରିୟ ।"

ତା'ପରେ ଶ୍ଳୋକର ଭାବାର୍ଥ ବୁଝାଇବାକୁ ଯାଇ ସେ କହିଲେ, "ଯାହାଙ୍କର କୌଣସିପ୍ରକାର ଇଚ୍ଛା, ସ୍ପୃହା ଓ କାମନା ନ ଥାଏ, ଯେ ଆପ୍ତକାମ ଏବଂ ଯାହାଙ୍କର କୌଣସି ବିଷୟରେ ଚିନ୍ତା ନ ଥାଏ, ତାଙ୍କୁ '*ଅନପେକ୍ଷ*' କୁହାଯାଏ ।

"ଯାହାଙ୍କର ଅନ୍ତଃକରଣ ଅତ୍ୟନ୍ତ ପବିତ୍ର, ଯାହାଙ୍କର ବାହ୍ୟବ୍ୟବହାର ମଧ୍ୟ ଉଦ୍‌ବେଗରହିତ, ପବିତ୍ର ଓ ନ୍ୟାୟସଙ୍ଗତ, ଯାହାଙ୍କର ଦର୍ଶନ, ଭାଷଣ,

ସ୍ପର୍ଶ ଓ କଥାଭାଷାରେ ଲୋକମାନେ ପବିତ୍ର ହୋଇଯାଆନ୍ତି, ସେ ହେଉଛନ୍ତି '*ଶୁଚି*' ।

''ଯେଉଁ ମହାନ୍ କାର୍ଯ୍ୟସାଧନ ନିମନ୍ତେ ମନୁଷ୍ୟଦେହ ମିଳିଛି, ସେହି ଲକ୍ଷ୍ୟ ପ୍ରାପ୍ତ କରିବା ଅର୍ଥାତ୍ ଭଗବାନଙ୍କୁ ପ୍ରାପ୍ତ କରିବା ହିଁ ହେଉଛି ମନୁଷ୍ୟର ଯଥାର୍ଥ ଦକ୍ଷତା । ଯେ ନିଜର ଏହି ମହାନ୍ ଲକ୍ଷ୍ୟ ସାଧିତ କରିପାରନ୍ତି, ତାଙ୍କୁ '*ଦକ୍ଷ*' ବୋଲାଯାଏ ।

''ଯେ ସାକ୍ଷ୍ୟ ଦେବା ସମୟରେ ଓ ନ୍ୟାୟବିଗ୍ରହ କରିବା ସମୟରେ ପରିବାର, ମିତ୍ର, ବନ୍ଧୁ ଆଦି ଭାବ ରଖି ବା ରାଗ, ଦ୍ୱେଷ, ଲୋଭ, ମୋହ ଏବଂ ଭୟ ଇତ୍ୟାଦିର ବଶୀଭୂତ ହୋଇ କାହାରି ପ୍ରତି ପକ୍ଷପାତ କରନ୍ତି ନାହିଁ, ସଦା-ସର୍ବଦା ପକ୍ଷପାତରହିତ ହୋଇ ରହନ୍ତି, ତାଙ୍କୁ '*ଉଦାସୀନ*' ବୋଲାଯାଏ ।

''ଦାରୁଣ ଦୁଃଖ, ମହା ମହା ବିପତ୍ତି ବା ଦୁଃଖର କାରଣ ଉପସ୍ଥିତ ହେଲେ ମଧ୍ୟ ଯେ ଦୁଃଖ ଅନୁଭବ କରନ୍ତି ନାହିଁ ଅର୍ଥାତ୍ ଯାହାଙ୍କ ଅନ୍ତଃକରଣରେ ବିଷାଦ, ଦୁଃଖ ବା ଶୋକ ସାମାନ୍ୟମାତ୍ର ପ୍ରଭାବ ବିସ୍ତାର କରିପାରେ ନାହିଁ, ତାଙ୍କୁ '*ଗତବ୍ୟଥ*' କୁହାଯାଏ ।

''ଯେ ବାହାର ଓ ଭିତରର ସମସ୍ତ କର୍ମ ତ୍ୟାଗ କରି କେବଳ ପ୍ରାରବ୍ଧ ଉପରେ ହିଁ ନିର୍ଭର କରିଥାନ୍ତି ; ନିଜ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ କୌଣସି କର୍ମ କରନ୍ତି ନାହିଁ ; ପ୍ରାରବ୍ଧବଶତଃ ଯାହା କିଛି ମିଳିଯାଏ, ସେଥିରେ ସନ୍ତୁଷ୍ଟ ରହନ୍ତି ତଥା ପ୍ରାରବ୍ଧବଶତଃ ହେଉଥିବା କାର୍ଯ୍ୟରେ ଯାହାଙ୍କର କର୍ତ୍ତୃତ୍ୱ ଅଭିମାନ ନ ଥାଏ, ସେପରି ବାହାରେ ଓ ଭିତରେ କର୍ମତ୍ୟାଗ କରିଥିବା, ବ୍ୟକ୍ତିଙ୍କୁ '*ସର୍ବାରମ୍ଭ ପରିତ୍ୟାଗୀ*' ବୋଲି କହନ୍ତି ।''

ପଣ୍ଡିତ ମହାଶୟ ଉପରୋକ୍ତ ଭାବାର୍ଥ ବୁଝାଇସାରିବା ପରେ ରାଜା ନମ୍ରତାପୂର୍ବକ କହିଲେ, ''ମହାଶୟ ! ଆପଣ ବଡ଼ ସୁନ୍ଦରଭାବରେ ଶ୍ଳୋକଟି ବୁଝାଇଦେଲେ । ଆପଣଙ୍କର ବକ୍ତବ୍ୟ ସଂପୂର୍ଣ୍ଣଭାବରେ ଯୁକ୍ତିଯୁକ୍ତ ଓ ଶାସ୍ତ୍ରସଙ୍ଗତ; କିନ୍ତୁ ଶ୍ଳୋକର ବଡ଼ ସୁନ୍ଦର ଅର୍ଥ କଲେ ମଧ୍ୟ, ଆପଣ ଏପର୍ଯ୍ୟନ୍ତ ଏହାର ରହସ୍ୟ ବିଷୟରେ ଅନଭିଜ୍ଞ ରହିଛନ୍ତି ବୋଲି ମୁଁ ଭାବୁଛି ।''ପଣ୍ଡିତ ମହାଶୟ ବିରକ୍ତି ପ୍ରକାଶ କରି କହିଲେ, ''ରହସ୍ୟ ଅବଗତ ନ ହୋଇଥିଲେ ମୁଁ ଭାବସହିତ ଅର୍ଥ କିପରି ବୁଝାଇପାରନ୍ତି ! ଗୀତାର ବାବନ ପ୍ରକାର ଟୀକା ମୋର କଣ୍ଠସ୍ଥ । ଏହା ଛଡ଼ା ଅନ୍ୟ କୌଣସି ବିଶେଷ ରହସ୍ୟ ଯଦି ଥାଏ ଓ ଆପଣ ଯଦି ତାହା ଜାଣିଥାନ୍ତି, ତା'ହେଲେ ଆପଣ ସେ ବିଷୟରେ ଆଲୋକପାତ କରନ୍ତୁ ।''

ରାଜା ଏହାର ଉତ୍ତର ନ ଦେଇ ଅତ୍ୟନ୍ତ ବିନୟ ସହକାରେ ମଧୁରବଚନରେ କହିଲେ, ‘‘ପଣ୍ଡିତ ମହାଶୟ ! ଆପଣଙ୍କର ଶାସ୍ତ୍ରସମ୍ମତ ସୁନ୍ଦର ସାବଲୀଳ ବ୍ୟାଖ୍ୟା ଅତ୍ୟନ୍ତ ସନ୍ତୋଷଜନକ । ମୁଁ ସେଥିପାଇଁ ଆପଣଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । ଏଣୁ ଆପଣ କୃପାପରବଶ ହୋଇ ଆଦର ସହକାରେ ମୋ ଦ୍ୱାରା ପ୍ରଦତ୍ତ ଏହି ଯତ୍‌କିଞ୍ଚିତ୍ ଉପହାର ଗ୍ରହଣ କରନ୍ତୁ ।’’

ପଣ୍ଡିତ ମହାଶୟ କହିଲେ, ‘‘ରାଜନ୍ ! ଆପଣ ତ କହୁଛନ୍ତି ଯେ, ମୁଁ ରହସ୍ୟ ବିଷୟରେ ଅନଭିଜ୍ଞ ; ତେଣୁ ଏଠାରେ ସନ୍ତୋଷର କଥା ଆସିଲା କେଉଁଠି ! ଏ ତ କେବଳ ତୁଣ୍ଡକୁହା ସନ୍ତୋଷ । ଆପଣ ଏ ବିଷୟରେ ଯଥାର୍ଥ ସନ୍ତୋଷ ଲାଭ ନ କରିବା ପର୍ଯ୍ୟନ୍ତ, ମୁଁ ଆପଣଙ୍କ ଠାରୁ କାଣୀକଉଡ଼ିଟିଏ ମଧ୍ୟ ଗ୍ରହଣ କରିବି ନାହିଁ ।’’ ରାଜା ବହୁ ଅନୁନୟ-ବିନୟ କଲେ, ତଥାପି ପଣ୍ଡିତ ମହାଶୟ କୌଣସି ଉପହାର ଗ୍ରହଣ ନ କରି ଘରକୁ ଫେରିଆସିଲେ । ଏଣେ ରାଜା ଜଣେ ବିଶ୍ୱସ୍ତ ଗୁପ୍ତଚରକୁ ଡକାଇ କହିଲେ, ‘‘ଦେଖ, ଏହି ବ୍ରାହ୍ମଣଦେବତା ବଡ଼ ତ୍ୟାଗୀ, ସଦାଗ୍ରହୀ ଓ ସ୍ୱାଭିମାନୀ ବିଦ୍ୱାନ୍ । ତୁମେ ତାଙ୍କ ପଛେ ପଛେ ଯାଇ ତାଙ୍କ ଘରେ ତାଙ୍କର ବ୍ୟବହାର, କାର୍ଯ୍ୟକଳାପ, ଓ କଥାଭାଷା ପ୍ରତି ଲକ୍ଷ୍ୟ ରଖ ଏବଂ ଆସି ସେ ବିଷୟରେ ମୋତେ ସୂଚନା ଦିଅ ।’’

ପଣ୍ଡିତ ମହାଶୟ ଘରକୁ ଫେରିଆସିବା ପରେ ତାଙ୍କ ପତ୍ନୀ ତାଙ୍କୁ ପଗ୍ଚରିବାରୁ, ରାଜସଭାରେ ଯାହା ଯାହା ଘଟିଥିଲା, ଆରମ୍ଭରୁ ଶେଷପର୍ଯ୍ୟନ୍ତ ସେ ସବୁକଥା ଶୁଣାଇଦେଲେ । ପତ୍ନୀ ବଡ଼ ବିନୟ ଓ ପ୍ରେମପୂର୍ବକ କହିଲେ, ‘‘ନାଥ ! ରାଜା ଯାହାସବୁ କହିଛନ୍ତି, ତାହା ତ ଉଚିତ ମନେ ହେଉଛି । ଆପଣ ଅସମ୍ମତ ହେବାର ନ ଥିଲା ।’’

ପଣ୍ଡିତ ମହାଶୟ ସାମାନ୍ୟ କ୍ରୋଧ ପ୍ରକାଶ କରି, ବ୍ୟଥିତ ହୋଇ କହିଲେ, ‘‘ବାଃ ! ତୁମେ ବି ରାଜାଙ୍କ କଥାକୁ ସମର୍ଥନ କରୁଛ !’’

ପତ୍ନୀ କହିଲେ, ‘‘ନାଥ ! ଆପଣ ତ କହନ୍ତି ଯେ, ନ୍ୟାୟସଙ୍ଗତ କଥାକୁ ସମର୍ଥନ କରିବା ଉଚିତ ।’’

**ପଣ୍ଡିତ ମହାଶୟ** (ଆଉ ଟିକିଏ ଉତ୍ତେଜିତ ହୋଇ, ତାଙ୍କୁ ଦବାଇ)– ମୋର ବ୍ୟାଖ୍ୟା ତ ସୁନ୍ଦର; କିନ୍ତୁ ମୁଁ ‘ରହସ୍ୟ ବୁଝିନାହିଁ’ ବୋଲି କହିବାଟା କ’ଣ ରାଜାଙ୍କ ପକ୍ଷରେ ନ୍ୟାୟସଙ୍ଗତ ହେଲା ?

**ପତ୍ନୀ** – ଆପଣ କ୍ଷମା କରନ୍ତୁ । ରାଜାଙ୍କ କଥା ତ ପୂରାପୂରି ଠିକ୍ ।

କୌଣସି ଶ୍ଳୋକର ବ୍ୟାଖ୍ୟା କରିବା ସହଜ; କିନ୍ତୁ ତା'ର ଯଥାର୍ଥ ରହସ୍ୟ ଜାଣିବା ବଡ଼ କଷ୍ଟକର ।''

**ପଣ୍ଡିତ ମହାଶୟ** – କିପରି ?

**ପତ୍ନୀ** – ଗ୍ରାମୋଫୋନ୍‌ରେ ରେକର୍ଡ ଲଗାଇଦେଲେ ସେଥିରେ ଯେପରି ଧ୍ୱନି ଅଙ୍କିତ ହୋଇଥାଏ, ତାହା ସେହିପରି ସଂଗୀତ ଗାନ କରେ । କିନ୍ତୁ ତା'ର ରହସ୍ୟକୁ ସେହି ରେକର୍ଡ (ଧ୍ୱନିପଟ୍ଟିକା) କ'ଣ ବୁଝିଥାଏ ?

**ପଣ୍ଡିତ ମହାଶୟ** – ତା'ହେଲେ ମୁଁ କ'ଣ ଗ୍ରାମୋଫୋନ୍ ପରି ?

**ପତ୍ନୀ** – ଯେ ଅନ୍ୟମାନଙ୍କୁ ଅତି ସୁନ୍ଦରଭାବରେ ଉପଦେଶ ଦେବାରେ ଧୁରନ୍ଧର ଓ ପ୍ରବୀଣ, କିନ୍ତୁ ନିଜେ ସେହିସବୁ ଉପଦେଶ ବାକ୍ୟକୁ ନିଜ ଜୀବନରେ ଆଚରଣ କରନ୍ତି ନାହିଁ, ଆପଣ ହିଁ କହନ୍ତୁ ତ, ଗ୍ରାମୋଫୋନ୍ ଏବଂ ତାଙ୍କ ମଧ୍ୟରେ କି ପାର୍ଥକ୍ୟ ଅଛି ? ରାଜା ପଗ୍ଚରିବାରୁ ଆପଣ ଶ୍ଳୋକଟିର ଯେଉଁ ବ୍ୟାଖ୍ୟା କଲେ, ସେସବୁ କଥା କ'ଣ ଆପଣ ନିଜେ ଆଚରଣ କରୁଛନ୍ତି ?

**ପଣ୍ଡିତ ମହାଶୟ** – କାହିଁକି ? କେଉଁ କଥାଟା ମୋ ଠାରେ ନାହିଁ ?

**ପତ୍ନୀ** – ଆପଣ ଶାନ୍ତଭାବରେ ମୋ ନିବେଦନ ଶୁଣନ୍ତୁ । ମୋର ପ୍ରାର୍ଥନା ଯେ, ଆପଣ ସେହି ଶ୍ଳୋକଟିର ପ୍ରତ୍ୟେକ ପଦର ଅର୍ଥ ପୁଣି ଥରେ ମୋତେ ବୁଝାନ୍ତୁ । *ଅନପେକ୍ଷ* ର ଭାବ କ'ଣ ?

**ପଣ୍ଡିତ ମହାଶୟ** – ଯାହାଙ୍କର କୌଣସିପ୍ରକାର ଇଚ୍ଛା, ସ୍ପୃହା ଓ କାମନା ନ ଥାଏ, ଯେ ଆପ୍ତକାମ ଏବଂ ଯେ କୌଣସି ବିଷୟ ଚିନ୍ତା କରନ୍ତି ନାହିଁ, ତାଙ୍କୁ *ଅନପେକ୍ଷ* ବୋଲାଯାଏ ।

**ପତ୍ନୀ** – ଆପଣ ଏହିପରି ଅଟନ୍ତି କି ?

**ପଣ୍ଡିତ ମହାଶୟ** – ନୁହେଁ କିପରି ? ମୋର ତ କୌଣସି ବି ଇଚ୍ଛା, ସ୍ପୃହା ଓ କାମନା ନାହିଁ । ମୁଁ ତ ତୁମରି ଅନୁରୋଧରେ ରାଜାଙ୍କ ନିକଟକୁ ଯାଇଥିଲି ଏବଂ ରାଜା ଅନୁନୟବିନୟ କଲେ ମଧ୍ୟ ମୁଁ ତାଙ୍କ ଠାରୁ କିଛି ଗ୍ରହଣ କରିନାହିଁ ।

**ପତ୍ନୀ** – ଖୁବ୍ ଭଲ କଥା । ଆପଣ ମୋ ଅନୁରୋଧରେ ଯାଇଥିଲେ, ଏ କଥା ସତ । ଏହା ଆପଣଙ୍କର ମୋ ପ୍ରତି ବିଶେଷ ଦୟା । ଆଚ୍ଛା, *ଶୁଚି*ର ଅଭିପ୍ରାୟ କ'ଣ ?

**ପଣ୍ଡିତ ମହାଶୟ** – ଯାହାଙ୍କର ଅନ୍ତଃକରଣ ଅତ୍ୟନ୍ତ ପବିତ୍ର, ଯାହାଙ୍କର ବାହାରର ବ୍ୟବହାର ମଧ୍ୟ ଉଦ୍‌ବେଗରହିତ, ପବିତ୍ର ଓ ନ୍ୟାୟସଙ୍ଗତ, ଯାହାଙ୍କର

ଦର୍ଶନ, ସ୍ପର୍ଶ ଓ କଥାଭାଷାରେ ହିଁ ଲୋକମାନେ ପବିତ୍ର ହୋଇଯାଆନ୍ତି, ସେ ହିଁ ଶୁଚି କୁହାଯିବାର ଯୋଗ୍ୟ ।

**ପରୀ** – ଆପଣ ନିଜେ ବାହାରେ ଓ ଭିତରେ ଏହିପରି ଶୁଦ୍ଧପୁତ ଅଟନ୍ତି କି ? ଆପଣଙ୍କର ଦର୍ଶନ, ଭାଷଣ, ସ୍ପର୍ଶ ଓ କଥାଭାଷା ଦ୍ୱାରା ଅନ୍ୟମାନେ ପବିତ୍ର ହୋଇଯାଆନ୍ତି କି ? ଆପଣଙ୍କ ଅନ୍ତଃକରଣରେ କ'ଣ କୌଣସ ବିକାର ସ୍ଥାନ ପାଇନାହିଁ ? ଆପଣଙ୍କର ବାହ୍ୟବ୍ୟବହାର କ'ଣ ଉଦ୍‌ବେଗରହିତ, ନ୍ୟାୟସଙ୍ଗତ ଓ ପବିତ୍ର ? ଯଦି ଏପରି ହୋଇଥାଏ, ତେବେ ଆପଣଙ୍କ ମନରେ କ୍ରୋଧ ତଥା ଉଦ୍‌ବେଗର ସଞ୍ଚାର ହେଲା କାହିଁକି ? ରାଜାଙ୍କୁ ଆପଣ ଅହଂକାରଯୁକ୍ତ କଥା କହିଲେ କାହିଁକି ?

**ପଣ୍ଡିତ ମହାଶୟ** – (ଲଜ୍ଜିତ ହୋଇ) ଠିକ୍ କଥା, ମୋ'ଠାରେ ଏହି ଗୁଣର ଅଭାବ ରହିଛି ।

**ପରୀ** – ଆଚ୍ଛା, ଆପଣ *ଦକ୍ଷ* ର ଭାବ  କ'ଣ ବୋଲି ବୁଝାଇଲେ ?

**ପଣ୍ଡିତ ମହାଶୟ** – ଯେଉଁ ମହାନ୍ କାର୍ଯ୍ୟ ସାଧନ ନିମନ୍ତେ ଏହି ମନୁଷ୍ୟ-ଶରୀର ପ୍ରାପ୍ତ ହୋଇଛି, ତାକୁ ପ୍ରାପ୍ତ କରିବା ଅର୍ଥାତ୍ ଭଗବତ୍‌ପ୍ରାପ୍ତି କରିବା ହିଁ ହେଉଛି ମନୁଷ୍ୟର ଯଥାର୍ଥ ଦକ୍ଷତା । ଯେ ନିଜର ଏହି ମହାନ୍ ଲକ୍ଷ୍ୟ ପ୍ରାପ୍ତ କରିପାରନ୍ତି, ସେ ହିଁ *ଦକ୍ଷ* ।

**ପରୀ** – ତା'ହେଲେ ଆପଣ ଯେଉଁ ମହାନ୍ କାର୍ଯ୍ୟ ନିମନ୍ତେ ସଂସାରକୁ ଆସିଛନ୍ତି, ତାହା କ'ଣ ସଂପୂର୍ଣ୍ଣ କରିସାରିଲେଣି ? ଆପଣ କ'ଣ ପରମପଦ ପ୍ରାପ୍ତ କରିସାରିଲେଣି ? ଯଦି ଏ ପର୍ଯ୍ୟନ୍ତ ଏହା କରିପାରି ନାହାନ୍ତି, ତେବେ ରାଜଙ୍କ ବକ୍ତବ୍ୟ ସଂପୂର୍ଣ୍ଣ ଠିକ୍ ।

**ପଣ୍ଡିତ ମହାଶୟ** – ତୁମ କଥା ସତ । ମୋ'ଠାରେ ଏ ଗୁଣ ବି ନାହିଁ ।

**ପରୀ** – ଆଚ୍ଛା, *ଉଦାସୀନ* ପଦର ଅଭିପ୍ରାୟ କ'ଣ ?

**ପଣ୍ଡିତ ମହାଶୟ** – ନ୍ୟାୟାଳୟରେ ସାକ୍ଷ୍ୟ ଦେବା ସମୟରେ ଅଥବା ନ୍ୟାୟାଳୟ ବା ପଞ୍ଚାୟତର କର୍ତ୍ତାରୂପେ କାହାର କଳି-ଝଗଡ଼ାର ସମାଧାନ କରିବା ସମୟରେ ବା ନିଜ ପରିବାର, ମିତ୍ର, ବନ୍ଧୁବାନ୍ଧବ ଆଦିଙ୍କ ବିଷୟରେ ମତ ଦେବା ସମୟରେ ଯେ ରାଗ, ଦ୍ୱେଷ, ଲୋଭ, ମୋହ ଏବଂ ଭୟାଦିବଶତଃ କୌଣସି ପକ୍ଷପାତ ନ କରି ସଦାସର୍ବଦା ପକ୍ଷପାତରହିତ ରହନ୍ତି, ତାଙ୍କୁ *ଉଦାସୀନ* ବୋଲାଯାଏ ।"

**ପତ୍ନୀ** – ତା'ହେଲେ ଆପଣ ପକ୍ଷପାତରହିତ ଅଟନ୍ତି କି ? ଆପଣ କ'ଣ ରାଜାଙ୍କ ସମକ୍ଷରେ ନିଜପକ୍ଷକୁ ସମର୍ଥନ କରିନାହାନ୍ତି ? ରାଜା ଯେତେବେଳେ କହିଲେ ଯେ, ଆପଣ ଶ୍ଳୋକଟିର ରହସ୍ୟ ବୁଝିନାହାନ୍ତି, ଆପଣ ସେତେବେଳେ ରାଜାଙ୍କର ସେହି ବକ୍ତବ୍ୟ ପ୍ରତି ଗଭୀର ଧ୍ୟାନ ଦେଇଛନ୍ତି କି ? ଯଦି ଏପରି ହୋଇ ନ ଥାଏ, ତେବେ ରାଜାଙ୍କର ବକ୍ତବ୍ୟ ଉଚିତ ନୁହେଁ କିପରି ? ରାଜାଙ୍କର କହିବାଟା ତ ପୂରାପୂରି ଠିକ୍ !

**ପଣ୍ଡିତ ମହାଶୟ** – (ସରଳ ଓ ପବିତ୍ର ହୃଦୟରେ ବିନମ୍ରଭାବରେ ନିଜର ତ୍ରୁଟି ସ୍ୱୀକାର କରି) ତୁମେ ସତ କହୁଛ । ସତରେ, ତୁମେ ଆଜି ମୋର ଆଖି ଖୋଲିଦେଲ । ପକ୍ଷପାତରହିତ ହେବାର ଗୁଣ ତ ମୋ'ଠାରେ ସଂପୂର୍ଣ୍ଣ ଅଭାବ । ଯେଉଁଠି ବାଦବିବାଦ ହେଉଥାଏ, ସେଠାରେ ମୁଁ ନିଜପକ୍ଷ ଦୁର୍ବଳ ବୋଲି ଜାଣି ମଧ୍ୟ, ନିଜପକ୍ଷରେ ତ୍ରୁଟି ରହିଛି ବୋଲି ଜାଣି ମଧ୍ୟ ନିଜପକ୍ଷର ଜିଦ୍ ଛାଡ଼େ ନାହିଁ ।

**ପତ୍ନୀ** – ଆଚ୍ଛା, *ଗତବ୍ୟଥ* ପଦଟିର ଆପଣ କି ଅର୍ଥ କରନ୍ତି ?

**ପଣ୍ଡିତ ମହାଶୟ** – କୌଣସି ପ୍ରକାର ଦାରୁଣ ଦୁଃଖ ଅଥବା ଦୁଃଖର କାରଣ ଆସି ଉପସ୍ଥିତ ହେଲେ ମଧ୍ୟ, ଯେ ସେଥିରେ ଦୁଃଖୀ ହୁଅନ୍ତି ନାହିଁ ଅର୍ଥାତ୍ ଯାହାଙ୍କ ଅନ୍ତଃକରଣରେ କେବେ ବି କୌଣସିପ୍ରକାର ଚିନ୍ତା, ଦୁଃଖ ବା ଶୋକ ହୁଏ ନାହିଁ, ଅନ୍ତଃକରଣରେ କୌଣସିପ୍ରକାର ବିକାର ହୁଏ ନାହିଁ, ସେ ହିଁ *ଗତବ୍ୟଥ* ।

**ପତ୍ନୀ** – ଆପଣଙ୍କ ମନରେ କ'ଣ କୌଣସି ବ୍ୟଥା ହୁଏ ନାହିଁ ? ଯଦି ନ ହୁଏ, ତେବେ ରାଜାଙ୍କର ମନ୍ତବ୍ୟ ଓ ସେଥି ପ୍ରତି ମୋର ସମର୍ଥନ ନେଇ ଆପଣ ଏତେ ଉଦ୍‌ବିଗ୍ନ ଓ ବ୍ୟଥିତ ହେବାର କାରଣ କ'ଣ ? ଆପଣଙ୍କ ଠାରେ ତ ସେଥିନେଇ ଏତେ ଉଦ୍‌ବେଗ ଓ ବ୍ୟଥା ଜାତ ହେବା ଉଚିତ ନୁହେଁ ।

**ପଣ୍ଡିତ ମହାଶୟ** – ତୁମେ ଯାହା କହୁଛ, ତାହା ନିରାଟ ସତ୍ୟ । ଏପରି ଭାବ ମୋ'ଠାରେ ଆଦୌ ନାହିଁ । ମନର ପ୍ରତିକୂଳ ପ୍ରତ୍ୟେକ ବିଷୟରେ କେବଳ ବ୍ୟଥା ନୁହେଁ, ବରଂ ଭୟ, ଉଦ୍‌ବେଗ, ଈର୍ଷ୍ୟା, ଶୋକ ଆଦି ବିକାର ମଧ୍ୟ ମୋ'ଠାରେ ସକ୍ରିୟ ହୋଇଉଠେ ।

**ପତ୍ନୀ** – "ଆଚ୍ଛା, ସର୍ବାରମ୍ଭପରିତ୍ୟାଗୀ କହିଲେ ଆପଣ କ'ଣ ବୁଝନ୍ତି ?

**ପଣ୍ଡିତ ମହାଶୟ** – 'ଯେ ବାହାର ଓ ଭିତରର ସମସ୍ତ କର୍ମ ତ୍ୟାଗ କରି

କେବଳ ପ୍ରାରବ୍ଧ ଉପରେ ନିର୍ଭର କରିଥାନ୍ତି; କୌଣସି ବି କର୍ମ ନିଜ ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ କରନ୍ତି ନାହିଁ, ଯେତେବେଳେ ଯାହା ମିଳିଲା, ସେଥିରେ ସନ୍ତୁଷ୍ଟ ରହନ୍ତି ତଥା ପ୍ରାରବ୍ଧବଶତଃ ହେଉଥିବା କ୍ରିୟାରେ ଯାହାଙ୍କର କର୍ତ୍ତୃତ୍ୱ ଅଭିମାନ ନ ଥାଏ, ସେପରି ବାହାର ଓ ଭିତରର ତ୍ୟାଗୀଙ୍କୁ *ସର୍ବାରମ୍ଭପରିତ୍ୟାଗୀ* ବୋଲାଯାଏ ।''

**ପତ୍ନୀ** – ବାଃ ! ବଡ଼ ସୁନ୍ଦର ବ୍ୟାଖ୍ୟା; ଅତି ଚମତ୍କାର ବ୍ୟାଖ୍ୟା; କିନ୍ତୁ କହନ୍ତୁ ତ, ଆପଣ କ'ଣ ବାହାର ଓ ଭିତରର ସକଳ କର୍ମରୁ ଆସକ୍ତି ତ୍ୟାଗ କରିଦେଇଛନ୍ତି ? ଆପଣଙ୍କ ଅନ୍ତଃକରଣରେ କ'ଣ କୌଣସି ସାଂସାରିକ କାମନା ନାହିଁ ? କ'ଣ କୌଣସି ସଂକଳ୍ପ ଉଦୟ ହେଉନାହିଁ ? ଯଦି ହେଉନାହିଁ, ତେବେ ଆପଣ ଏତେ ଅହଂକାର କରିବା ଉଚିତ କି ? ବାହାରେ ତ ଆପଣ ସବୁ କର୍ମ କରୁଛନ୍ତି ।

**ପଣ୍ଡିତ ମହାଶୟ** – ସତକଥା; ଏହି ଗୁଣଟି ମୋଠାରେ ଆଦୌ ନାହିଁ । ମୁଁ ନିଜର ସମସ୍ତ ତ୍ରୁଟି ବୁଝିପାରିଲି । ସତରେ ମୁଁ ଏ ପର୍ଯ୍ୟନ୍ତ କେବଳ ଅର୍ଥ ବୁଝାଇବାରେ ହିଁ ଲାଗିଥିଲି । ରହସ୍ୟ ବିଷୟରେ ତ ମୁଁ ସଂପୂର୍ଣ୍ଣ ଅନଭିଜ୍ଞ । ବର୍ତ୍ତମାନ ସାମାନ୍ୟ କିଛି ବୁଝିପାରିଛି । ସୁତରାଂ ତୁମେ ଅନୁମତି ଦିଅ; ମୁଁ ଏଥର ବାହାର ଓ ଭିତରର ସବୁକିଛି ତ୍ୟାଗ କରିଦେଇ ପ୍ରକୃତ ସନ୍ନ୍ୟାସୀ ହେବାକୁ ଚାହିଁଲି ।''

ଏପରି କହି ପଣ୍ଡିତ ମହାଶୟ ସବୁକିଛି ତ୍ୟାଗ କରି ଘରୁ ବାହାରିବାକୁ ବସିଲେ ।

**ପତ୍ନୀ ପ୍ରାର୍ଥନା କଲେ** – ମହାଶୟ ! ମୁଁ ମଧ୍ୟ ଆପଣଙ୍କର ଅନୁଗମନ କରିବାକୁ ଚାହୁଁଛି ।

**ପଣ୍ଡିତ ମହାଶୟ** – ମୁଁ ନିଜ ସଙ୍ଗରେ କୌଣସି ଜଞ୍ଜାଳ ରଖିବାକୁ ଚାହେଁନାହିଁ; ତେଣୁ ପତ୍ନୀଙ୍କୁ ରଖିବି ବା କିପରି ?

**ପତ୍ନୀ** – ଆପଣ ମୋତେ ଜଞ୍ଜାଳ ବୋଲି ଭାବନ୍ତୁ ନାହିଁ । ମୁଁ ଆପଣଙ୍କ ସାଧନାରେ କୌଣସି ବିଘ୍ନ ସୃଷ୍ଟି କରିବି ନାହିଁ । ମୁଁ ଆଜି ଆପଣଙ୍କୁ ଧନ ନିମନ୍ତେ ରାଜାଙ୍କ ନିକଟକୁ ପଠାଇ ନ ଥିଲି; ଧନକୁ କେବଳ ନିମିତ୍ତ କରି ରଖିଥିଲି । ଆପଣ କିପରି ଜୀବନର ପରମ ଲକ୍ଷ୍ୟ ପ୍ରାପ୍ତ କରନ୍ତୁ, ତାହା ହିଁ ମୋର ପ୍ରକୃତ ଉଦ୍ଦେଶ୍ୟ ଥିଲା । ରାଜା ହେଉଛନ୍ତି ଜଣେ ତତ୍ତ୍ୱଜ୍ଞ, ଜୀବନ୍ମୁକ୍ତ ମହାପୁରୁଷ । ଆପଣ

ହେଉଛନ୍ତି ଜଣେ ଧର୍ମଜ୍ଞ, ସଦାଚାରୀ, ତ୍ୟାଗୀ, ସନ୍ତୋଷୀ ଓ ବିଦ୍ୱାନ୍ ମନୁଷ୍ୟ । ତତ୍ତ୍ୱଜ୍ଞ ରାଜାଙ୍କ ସଙ୍ଗପ୍ରଭାବରେ ଆପଣଙ୍କୁ ପରମାତ୍ମାଙ୍କ ପ୍ରାପ୍ତି ବି ହୋଇଯିବ, ଏହି ଅଭିପ୍ରାୟରେ ମୁଁ ଆପଣଙ୍କୁ ସେଠାକୁ ପଠାଇଥିଲି । ବର୍ତ୍ତମାନ ଯଦି ଆପଣ ଅନୁମତି ପ୍ରଦାନ କରନ୍ତି, ତେବେ ମୁଁ ମଧ୍ୟ ଆପଣଙ୍କ ସହିତ ଯିବାକୁ ଚାହୁଁଛି ।''

**ପଣ୍ଡିତ ମହାଶୟ** – (କୃତଜ୍ଞତାର ସହିତ) ମୁଁ ବର୍ତ୍ତମାନ ସବୁକଥା ବୁଝିପାରିଲି । ସତରେ, ତୁମ ଦ୍ୱାରା ମୋର କୌଣସି କ୍ଷତି ହେବ ନାହିଁ । ତୁମେ ହିଁ ତ ମୋର ଯଥାର୍ଥ ଉପକାର କରିଥିବା ପରମ ମିତ୍ର । ବସ୍ତୁତଃ, ଯେ ନିଜ ପ୍ରିୟଜନଙ୍କୁ ପରମାତ୍ମପ୍ରାପ୍ତିରେ ସାହାଯ୍ୟ କରନ୍ତି, ସେ ହିଁ ପ୍ରକୃତ ବନ୍ଧୁ । ଚାଲ; ତୁମେ ସେଠାରେ ବି ମୋର ପରମାତ୍ମପ୍ରାପ୍ତିରେ ସାହାଯ୍ୟ କରିବ ।

ସେ ଦୁହେଁ ସବୁକିଛି ତ୍ୟାଗ କରିଦେଇ ଘରୁ ବାହାରିଗଲେ । ଏଣେ ରାଜାଙ୍କ ଦ୍ୱାରା ନିଯୁକ୍ତ ଗୁପ୍ତଚରଣଜଣକ ସେ ଦୁହିଁଙ୍କ ଭିତରେ ଚାଲିଥିବା ଯେଉଁ କଥାଭାଷା ଶୁଣିଲେ ଏବଂ ଘଟଣାସବୁ ଦେଖିଲେ, ଯାଇ ରାଜାଙ୍କ ପାଖରେ ତାହା ଅବିକଳ ଶୁଣାଇଦେଲେ । ରାଜା ନିଜର ରାଜ୍ୟ, ଧନଭଣ୍ଡାର ଆଦି ସବୁ ଆଗରୁ ହିଁ ନିଜ ପୁତ୍ରକୁ ସମର୍ପି ଦେଇଥିଲେ; ବର୍ତ୍ତମାନ, ଗୁପ୍ତଚରର କଥାଶୁଣି ସେ ମଧ୍ୟ ରାଜ୍ୟ ତ୍ୟାଗ କରି ଚାଲିଗଲେ । ବାଟରେ ସମ୍ମୁଖରୁ ଆସୁଥିବା ବ୍ରାହ୍ମଣଦମ୍ପତିଙ୍କ ସହିତ ତାଙ୍କର ଭେଟ ହୋଇଗଲା । ରାଜା ବଡ଼ ପ୍ରସନ୍ନ ହୋଇ ପଣ୍ଡିତଙ୍କୁ ପଚାରିଲେ, ''ପଣ୍ଡିତ ମହାଶୟ ! ବର୍ତ୍ତମାନ ଆପଣ ଗୀତାର ସେହି ଶ୍ଳୋକଟିର ରହସ୍ୟ ବୁଝିଲେ ତ ?''

ପଣ୍ଡିତ ମହାଶୟ ନମ୍ରତାର ସହିତ ଉତ୍ତର ଦେଲେ,–''ଏପର୍ଯ୍ୟନ୍ତ ବୁଝିନାହିଁ; ବୁଝିବା ନିମନ୍ତେ ଯାଉଛି ।''

ରାଜା ମଧ୍ୟ ତାଙ୍କ ସହିତ ଚାଲିଲେ । ତିନିଜଣଯାକ ଯାଇ ଗୋଟିଏ ଏକାନ୍ତ ପବିତ୍ର ସ୍ଥାନରେ ନିବାସ କଲେ । ରାଜା ଓ ବ୍ରାହ୍ମଣପତ୍ନୀ ତ ପୂର୍ବରୁ ହିଁ ତତ୍ତ୍ୱଜ୍ଞାନୀ ଜୀବନ୍ମୁକ୍ତ ମହାତ୍ମା ଥିଲେ । ସେମାନଙ୍କ ସତ୍‌ସଙ୍ଗ ପ୍ରଭାବରୁ ପଣ୍ଡିତ ମହାଶୟ ମଧ୍ୟ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଗଲେ ।

(ଏହି କାହାଣୀଟି ଗୀତା ଦ୍ୱାଦଶ ଅଧ୍ୟାୟର ଷୋଡ଼ଶ ଶ୍ଳୋକର ନିବୃତ୍ତିମୂଳକ ଅର୍ଥ କରି ବର୍ଣ୍ଣନା କରାଯାଇଛି । ଏହାର ପ୍ରବୃତ୍ତିମୂଳକ ଅର୍ଥ, ଏହାଠାରୁ ଭିନ୍ନ ।)

*ହରି ଓଁ ତତ୍ ସତ୍*

~~ 0 ~~

# ୪. ଭଗବନ୍ନାମର ପ୍ରଭାବ

ଗୋସ୍ୱାମୀ ତୁଳସୀଦାସ ମହାରାଜ ନିଜ ରଚିତ ମାନସଗ୍ରନ୍ଥରେ ଭଗବାନଙ୍କ ନାମର ମହିମା ବର୍ଣ୍ଣନା କରି କହିଛନ୍ତି, କଳିଯୁଗରେ କେବଳ ଭଗବାନଙ୍କର ନାମ ହିଁ ମନୁଷ୍ୟମାନଙ୍କର ଏକମାତ୍ର ଆଶ୍ରୟ । ପିଙ୍ଗଳା ବେଶ୍ୟା ଓ ଅଜାମିଳଙ୍କ ପରି ମହାପାପୀ ମଧ୍ୟ ଏକମାତ୍ର ଭଗବାନଙ୍କ ନାମର ପ୍ରଭାବରେ ଅନାୟାସରେ ମୁକ୍ତ ହୋଇଗଲେ । ଶ୍ରୀହନୁମାନଜୀ ମହାରାଜ ଭଗବାନଙ୍କ ନାମର ପ୍ରଭାବରେ ଭଗବାନ୍ ଶ୍ରୀରାମଙ୍କୁ ନିଜର ବଶୀଭୂତ କରି ରଖିଛନ୍ତି । ଜିହ୍ୱାରେ ନାମ ଉଚ୍ଚାରିତ ହେଉଥିଲେ ବାହାର ଓ ଭିତର ସର୍ବତ୍ର ଆଲୋକିତ ହୋଇଯାଏ । ନାମର ମହିମା ଏତେ ଅଧିକ ଯେ, ସ୍ୱୟଂ ଭଗବାନ୍ ମଧ୍ୟ ତାହାର ବର୍ଣ୍ଣନା କରିବାକୁ ଅସମର୍ଥ - ''***ରାମ ନ ସକହିଁ ନାମ ଗୁନ ଗାଈ***'' । ଏପରି କି, ଭଗବାନ୍ ଶିବ ଏହି ନାମ ବଳରେ ହିଁ କାଶୀରେ ସମସ୍ତ ଜୀବଙ୍କୁ ମୁକ୍ତି ପ୍ରଦାନ କରିଥାଆନ୍ତି । ଏହିପରିଭାବରେ ଶ୍ରୀମଦ୍ ଭାଗବତ, ମହାଭାରତ ଆଦି ଅନ୍ୟ ସଦ୍ ଗ୍ରନ୍ଥ ମଧ୍ୟ ନାମ-ମହିମାରେ ପରିପୂର୍ଣ୍ଣ ; କିନ୍ତୁ ଶାସ୍ତ୍ରମାନଙ୍କରେ ଏପରି ବର୍ଣ୍ଣନା ହୋଇଥିଲେ ମଧ୍ୟ ନାମର ପ୍ରତ୍ୟକ୍ଷ ପ୍ରଭାବ ଦେଖାଯାଉନାହିଁ; ଏହାର କାରଣ କ'ଣ ?

ଏପରି ସଂଶୟ ପ୍ରକାଶ କରି କେହି କେହି ମହାନୁଭବ କାରଣ କଣ ବୋଲି ପଚାରନ୍ତି । ଏସବୁର ଗୋଟିଏମାତ୍ର ଉତ୍ତର ଏହି ଯେ, ପ୍ରତ୍ୟକ୍ଷ ଫଳ ଅନୁଭବ ନ ହେଉଥିବାର କାରଣ ହେଉଛି, ଭଗବାନଙ୍କ ନାମରେ ଶ୍ରଦ୍ଧା ଓ ବିଶ୍ୱାସର ଅଭାବ । ପ୍ରକୃତରେ ଦେଖିବାକୁ ଗଲେ, ଭଗବାନଙ୍କ ନାମର ମହିମା, ଶାସ୍ତ୍ରବର୍ଣ୍ଣିତ ମହିମାଠାରୁ ଯଥେଷ୍ଟ ଅଧିକ । ନାମ-ମହିମାର କୌଣସି ସୀମା ନାହିଁ । ଏହାର ସୀମା ନିର୍ଦ୍ଧାରଣ କରି ହେବ ନାହିଁ । ଶାସ୍ତ୍ରକଥିତ ମହିମା ତ ନାମରୁ ଉପକାର ଲାଭ କରିଥିବା ମହାପୁରୁଷମାନଙ୍କର ଘୋଷଣାମାତ୍ର । ଈଶ୍ୱରଙ୍କର ଏବଂ ସତ୍ସଙ୍ଗର ମହିମା ଯେତେ ବର୍ଣ୍ଣନା କଲେ ମଧ୍ୟ, ତାହା ଯଥେଷ୍ଟ ନୁହେଁ; ତାହା ସ୍ୱଳ୍ପମାତ୍ର । ସେହିପରି ନାମର ଯେତେସବୁ ମହିମା ବର୍ଣ୍ଣିତ ହୋଇଛି,

ତାହା କଦାପି ଯଥେଷ୍ଟ ନୁହେଁ । ସତ କହିବାକୁ ଗଲେ, ଭଗବାନଙ୍କ ନାମର ତତ୍ତ୍ୱ, ରହସ୍ୟ, ଗୁଣ, ପ୍ରଭାବ ଆଦି ଜାଣି ନ ଥିବା ହେତୁ ସେଥି ପ୍ରତି ଶ୍ରଦ୍ଧାର ଅଭାବ ହୋଇଥାଏ । ଶ୍ରଦ୍ଧା ଅଭାବରୁ ତଥା ବେଳେ ବେଳେ ସଂପୂର୍ଣ୍ଣ ଅଶ୍ରଦ୍ଧା ହେତୁ ମନୁଷ୍ୟକୁ ଯଥାର୍ଥ ଲାଭରୁ ବଞ୍ଚିତ ହେବାକୁ ପଡ଼େ । ନାମର ମହିମା ତ ଅକଳନୀୟ, ଅପରିମିତ । ସଂସାରର କୌଣସି ପଦାର୍ଥ ସହିତ ଭଗବାନଙ୍କ ନାମର ତୁଳନା କରି ହେବ ନାହିଁ । ସଂସାରର ଜଡ଼ ଓ ବିନାଶଶୀଳ ବସ୍ତୁ ସହିତ ଭଗବାନଙ୍କ ନାମକୁ ତଉଲିବା ହେଉଛି ନିଜର ଅଜ୍ଞତାର ପରିଗ୍ରାୟକ ।

**ଭଗବାନଙ୍କ ନାମର ପ୍ରଭାବ ବିଷୟରେ ଗୋଟିଏ ଉଦାହରଣ :**

ଜଣେ ଉଚ୍ଚକୋଟିର ଭଗବଦ୍‌ଭକ୍ତ ନାମନିଷ୍ଠ ମହାପୁରୁଷ ଥିଲେ । ତାଙ୍କ ନିକଟରେ ତାଙ୍କର ଜଣେ ଶିଷ୍ୟ ମଧ୍ୟ ରହୁଥିଲେ । ଦିନକର କଥା; ସେହି ମହାପୁରୁଷ କୌଣସି କାର୍ଯ୍ୟରେ ବାହାରକୁ ଯାଇଥାନ୍ତି, ଏତିକିବେଳେ ଜଣେ ବ୍ୟକ୍ତି ଆସି ପଗ୍ଚରିଲେ, "ସ୍ୱାମିଜୀ ମହାରାଜ କେଉଁଠି ଅଛନ୍ତି ?" ଶିଷ୍ୟ ଉତ୍ତର ଦେଲେ, "ସ୍ୱାମିଜୀ ମହାରାଜ ତ କୌଣସି ବିଶେଷ କାର୍ଯ୍ୟରେ ବାହାରକୁ ଯାଇଛନ୍ତି । ଆପଣଙ୍କର କୌଣସି କାର୍ଯ୍ୟ ଅଛି ତ, କହନ୍ତୁ ।" ଆଗନ୍ତୁକ ଜଣକ କହିଲେ, "ମୋ ପୁଅଦେହ ଭୀଷଣ ଖରାପ ; ସେ କିପରି ଆରୋଗ୍ୟ ଲାଭ କରିବ, ତା ଦେହ କିପରି ଭଲ ହୋଇଯିବ ! ସ୍ୱାମିଜୀ ତ ନାହାନ୍ତି ; ଆପଣ ତା'ହେଲେ କୌଣସି ଉପାୟ କହି କୃପା କରନ୍ତୁ ।"

ଶିଷ୍ୟ କହିଲେ, "ଗୋଟିଏ ଅତି ସରଳ ଉପାୟ କହୁଛି– ତିନିଥର 'ରାମନାମ' ଲେଖି, ତାକୁ ଧୋଇଦେଇ ସେହି ପାଣିତକ ପୁଅକୁ ପିଆଇଦିଅନ୍ତୁ । ବାସ୍, ସେତିକିରେ ଦେହ ଭଲ ହୋଇଯିବ ।"

ଆଗନ୍ତୁକ ଭଦ୍ରବ୍ୟକ୍ତି ନିଜ ଘରକୁ ଫେରିଗଲେ । ପରଦିନ ସେ ବ୍ୟକ୍ତି ଅତ୍ୟନ୍ତ ପ୍ରସନ୍ନବଦନରେ ସାଧୁ ମହାପୁରୁଷଙ୍କ କୁଟୀରକୁ ଆସିଲେ । ସାଧୁ ମହାରାଜ ସେତେବେଳେ କୁଟୀରରେ ଥାଆନ୍ତି । ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ସେହି ଭଦ୍ରବ୍ୟକ୍ତି ନମ୍ରତାପୂର୍ବକ ହାତ ଯୋଡ଼ି ନିବେଦନ କଲେ, "ସ୍ୱାମିଜୀ ମହାରାଜ ! ଆପଣଙ୍କ ଶିଷ୍ୟ ଜଣେ ସିଦ୍ଧପୁରୁଷ । କାଲିର କଥା; ମୁଁ କାଲି ଏଠାକୁ ଆସିଥିଲି । ସେତେବେଳେ ଆପଣ ବାହାରକୁ କେଉଁଆଡ଼େ ଯାଇଥିଲେ । କେବଳ ଆପଣଙ୍କର ଶିଷ୍ୟ ଏଠାରେ ଥିଲେ । ଆପଣ ନ ଥିବାରୁ ମୋ ପୁଅର ରୋଗ କିପରି ଭଲ ହେବ, ମୁଁ ତାଙ୍କୁ ତାହାର ଉପାୟ ପଗ୍ଚରିଲି । ସେ କହିଲେ, ତିନିଥର ରାମ-ନାମ

ଲେଖି, ତାକୁ ପାଣିରେ ଧୋଇ, ସେହି ପାଣି ପିଆଇଦେଲେ ପୁଅ ଦେହ ଭଲ ହୋଇଯିବ । ମୁଁ ଘରକୁ ଫେରି ତାଙ୍କ କହିବା ଅନୁସାରେ ଉପଗ୍ରର କାଲି । ବଡ଼ ଆଶ୍ଚର୍ଯ୍ୟ ଏବଂ ଆନନ୍ଦର କଥା ଯେ, ତାହାଦ୍ୱାରା ମୋ ପୁଅ ସଙ୍ଗେ ସଙ୍ଗେ ଉଠି ଗ୍ଲଲବୁଲ କଲା; ମନେହେଲା, ସତେ ଯେପରି ତା'ଠାରେ କୌଣସି ରୋଗ ନ ଥିଲା ।''

ଏହା ଶୁଣି ସାଧୁ ମହାତ୍ମା ନିଜ ଶିଷ୍ୟଙ୍କ ଉପରେ ବଡ଼ ରୁଷ୍ଟ ହୋଇଗଲେ ଏବଂ ତାଙ୍କର ହିତ ନିମନ୍ତେ କ୍ରୋଧର ଅଭିନୟ କରି କହିଲେ, ''ଆରେ ମୂର୍ଖ ! ଏ ସାମାନ୍ୟ ରୋଗ ପାଇଁ ତୁ ରାମ-ନାମର ତିନିଥର ପ୍ରୟୋଗ କରାଇଲୁ ! ତୁ ନାମର ମହିମା ଟିକିଏମାତ୍ର ଜାଣିନୁ । ଆରେ, ଥରେମାତ୍ର ନାମ ଉଚ୍ଚାରଣ କଲେ ଅନନ୍ତକୋଟି ପାପ ଓ ଭବରୋଗ ନାଶ ହୋଇଯାଏ ଏବଂ ମନୁଷ୍ୟ ଅନାମୟ ପରମପଦ ପାଇଯାଏ । ତୁ ଏହି ଆଶ୍ରମରେ ରହିବାର ଯୋଗ୍ୟ ନୋହୁଁ । ଏଣୁ, ତୋର ଯେଉଁଠାକୁ ଇଚ୍ଛା, ସେଠାକୁ ଗ୍ଲିଯା ।'' ଏଥିରେ ଶିଷ୍ୟଙ୍କ ଆଖିରୁ ଲୁହ ବୋହିଆସିଲା ଏବଂ ସେ ନିଜ ଗୁରୁଦେବଙ୍କୁ ବହୁତ ଅନୁନୟ-ବିନୟ, ବହୁତ କାକୁତି-ମିନତି କଲେ । ସାଧୁସନ୍ଥଙ୍କର ହୃଦୟ ତ ଲହୁଣି ପରି କୋମଳ । ଗୁରୁଙ୍କ ହୃଦୟ ଦୟାରେ ବିଗଳିତ ହୋଇଗଲା ଏବଂ ସେ ଶିଷ୍ୟର ଅପରାଧ କ୍ଷମା କରିଦେଲେ ।

ତା'ପରେ ସାଧୁ ମହାତ୍ମା କେଉଁଠୁ ଗୋଟିଏ ସୁନ୍ଦର ଚକଚକିଆ ପଥର ଆଣି ଶିଷ୍ୟଙ୍କ ହାତକୁ ବଢାଇଦେଲେ ; କହିଲେ, ''ତୁ ସହରକୁ ଯାଇ, ଏହାର ମୂଲ୍ୟ କେତେ, ବୁଝି ଆ । ସାବଧାନ ! ଯେ ଯେତେ ମୂଲ୍ୟ ଦେଉ ନା କାହିଁକି, ଏହା ବିକିବୁନି । କିଏ କେତେ ମୂଲ୍ୟ କହୁଛି, କେବଳ ତାହା ଲେଖିରଖି ଫେରିଆସିବୁ ।''

ଶିଷ୍ୟ ପଥରଟି ନେଇ ବଜାରକୁ ଗଲେ । ସର୍ବପ୍ରଥମେ ପରିବା ବିକ୍ରି କରୁଥିବା ଜଣେ ମାଲୁଣୀକୁ ଭେଟିଲେ । ସେ ପଥରଟି ବାହାର କରି, ତାକୁ ଦେଖାଇ ପଗ୍ରିଲେ, ''ତୁ ଅତି ବେଶୀରେ ଏହାର କେତେ ଦାମ୍ ଦେଇପାରିବୁ ?'' ପରିବାବିକାଳୀ ସ୍ତ୍ରୀଜଣକ ପଥରର ଗ୍ଭକଚକ୍ୟ ଓ ସୌନ୍ଦର୍ଯ୍ୟ ଦେଖି ଭାବିଲା, ଏଇଟା ଖୁବ୍ ଭଲ ପଥର ; ପିଲାଙ୍କର ଖେଳନା ପାଇଁ ଏହା ବଢ଼ିଆ କାମ ଦେବ । ସେ କହିଲା, ''ଏହାର ମୂଲ୍ୟ ବାବଦକୁ ସେରେ-ଦେଢସେର ମୂଳା, କି ଆଳୁ, କି ଯେଉଁ ପରିବା ତୁମର ପସନ୍ଦ ହେଉଛି, ତାହା ନେଇଯା ।'' ''ନା,

ଏହା ବିକାଯିବ ନାହିଁ,'' କହି ଶିଷ୍ୟ ଆଗକୁ ଗ୍ଲିଲେ । ଯାଉ ଯାଉ ଜଣେ ବ୍ୟବସାୟୀଙ୍କ ସହିତ ଭେଟ ହୋଇଗଲା । ସେ ତାଙ୍କୁ ପଗ୍ଗରିଲେ, ''ସେଠ୍ ଆଜ୍ଞା ! ଏ ପଥରଟିର ମୂଲ୍ୟ ବାବଦକୁ ଆପଣ କେତେ ଦେଇପାରିବେ ?'' ବ୍ୟବସାୟୀଜଣକ ଭାବିଲେ, ପଥରଟି ତ ବଡ଼ ସୁନ୍ଦର ଓ ଚକ୍‌ଚକ୍ ଦେଖାଯାଉଛି ଏବଂ ଖୁବ୍ ଓଜନିଆ ମଧ୍ୟ ହୋଇଛି ; ଏଣୁ ସୁନା-ରୂପା ଓଜନ କରିବାରେ ଏହା ବିଶେଷ ଦରକାରରେ ଆସିବ । ସେ କହିଲେ, ''ଖୁବ୍ ବେଶୀରେ ଶହେଟଙ୍କା ଦେଇପାରିବି ।'' ତାଙ୍କୁ ମନା କରିଦେଇ ଶିଷ୍ୟ ଆହୁରି ଆଗକୁ ଗ୍ଲିଲେ । ଯାଉ ଯାଉ ଗୋଟିଏ ବଣିଆ ଦୋକାନରେ ପହଞ୍ଚିଲେ । ବଣିଆ ସେହି ପଥର ଦେଖି ବିଗ୍ଗର କରିବାକୁ ଲାଗିଲେ, ଏଇଟା ତ ବଡ଼ ଦରକାରୀ ଜିନିଷ । ଯାକୁ ଭାଙ୍ଗି ବହୁତଗୁଡ଼ିଏ ପଦ୍ମରାଗମଣି ତିଆରି କରାଯାଇପାରିବ । ଏଣୁ ସେ କହିଲେ, ''ଅତି ବେଶୀରେ ହଜାରେ ଟଙ୍କା ଦେଇପାରିବି ।''

''ବିକାଯିବ ନାହିଁ,'' କହି ଶିଷ୍ୟ ଅତ୍ୟନ୍ତ ଉତ୍ସାହପୂର୍ବକ ଆଗକୁ ଗ୍ଲିଲେ ଏବଂ ଜଣେ ଅଳଙ୍କାର ବ୍ୟବସାୟୀଙ୍କ ଦୋକାନରେ ପହଞ୍ଚିଲେ । ପ୍ରଥମେ ଗୁରୁଦେବଙ୍କ ପାଖରୁ ବାହାରିବାବେଳେ ତାଙ୍କର କୌଣସି ଅଳଙ୍କାର ବ୍ୟବସାୟୀଙ୍କ ନିକଟକୁ ଯିବାର ସାହସ ନ ଥିଲା ; କିନ୍ତୁ ପଥରଟିର ମୂଲ୍ୟ ଯେତେ ବଢ଼ିବାକୁ ଲାଗିଲା, ତାଙ୍କର ସାହସ ସେତିକି ବଢ଼ିବାରେ ଲାଗିଲା । ତାଙ୍କର ଦୃଷ୍ଟିଭଙ୍ଗୀ ମଧ୍ୟ ବଦଳିଗଲା । ଏହା ଖଣ୍ଡିଏ ସାଧାରଣ ଚକଚକିଆ ପଥର ବୋଲି ତାଙ୍କର ଯେଉଁ ଧାରଣା ଥିଲା, ତାହା ଏବେ ଦୂର ହୋଇଗଲା । ପଥରଟି ଅଳଙ୍କାର ବ୍ୟବସାୟୀଙ୍କୁ ଦେଖାଇ ସେ ତାର ଦାମ୍ ପଗ୍ଗରିଲେ । ଅଳଙ୍କାର ବ୍ୟବସାୟୀ ନିରେଖି ଦେଖିବା ପରେ ତାହା ଖଣ୍ଡେ ହୀରା ବୋଲି ଭାବିଲେ । ତେଣୁ ସେ ତା'ର ମୂଲ୍ୟ ବାବଦକୁ ଏକ ଲକ୍ଷ ଟଙ୍କା ଦେବାକୁ ପ୍ରସ୍ତୁତ ହେଲେ । କିନ୍ତୁ ପଥରଟି ତ ବିକିବାର ନ ଥିଲା । ଏଣୁ ଶିଷ୍ୟଜଣକ ତାଙ୍କୁ ମଧ୍ୟ ପୂର୍ବ ପରି ଉତ୍ତର ଦେଇ ଜଣେ ବଡ଼ ଅଳଙ୍କାର ବ୍ୟବସାୟୀଙ୍କ ଦୋକାନରେ ପହଞ୍ଚିଲେ । ସେଠାରେ ଯେତେ ବଡ଼ ବଡ଼ ଅଳଙ୍କାର ବ୍ୟବସାୟୀ ଥିଲେ, ସମସ୍ତେ ମିଶି ତାହା ତନ୍ନ ତନ୍ନ କରି ପରୀକ୍ଷା କଲେ ଏବଂ ତା'ର ମୂଲ୍ୟ ପାଞ୍ଚକୋଟି ଟଙ୍କା ହେବ ବୋଲି କହିଲେ । ଶିଷ୍ୟ ସେଠାରୁ ଫେରିଆସି ରାଜାଙ୍କ ନିକଟକୁ ଗଲେ । ରାଜା ସେହି ଶିଷ୍ୟଙ୍କୁ ବଡ଼ ଆଦର କରି ବସାଇଲେ ଏବଂ ବଡ଼ ବଡ଼ ଅଳଙ୍କାର ବ୍ୟବସାୟୀଙ୍କୁ ଡକାଇ ସେହି ରତ୍ନର ମୂଲ୍ୟାୟନ କରିବାକୁ କହିଲେ । ବିଗ୍ଗର-ବିମର୍ଶ ପରେ ସମସ୍ତେ

ବିସ୍ମୟ ପ୍ରକାଶ କରି କହିଲେ, "ମହାରାଜ ! ଆମେ ତ ଏପରି ରତ୍ନ କେବେ ବି ଦେଖିନୁ । ଏଣୁ ଏହାର ମୂଲ୍ୟାୟନ କରିବା ଆମ ବୁଦ୍ଧିର ବାହାରେ । ଯାହା ଜଣାଯାଉଛି, ଆପଣ ନିଜର ସାରା ରାଜ୍ୟ ଦେଇଦେଲେ ବି, ଏହାର ମୂଲ୍ୟ ନିମନ୍ତେ ତାହା ଯଥେଷ୍ଟ ହେବ ନାହିଁ ।"

ରାଜା ଶିଷ୍ୟଙ୍କୁ ପଚ୍ଚାରିଲେ, "ଏପରି ଅନୁପମ, ଅତୁଳନୀୟ ରତ୍ନ ତୁମକୁ କେଉଁଠୁ ମିଳିଲା ?" ଶିଷ୍ୟ କହିଲେ, "ମୋର ଗୁରୁଦେବ ମୋତେ ଏହା ଦେଇ କେବଳ ଏହାର ମୂଲ୍ୟାୟନ କରାଇବାକୁ ପଠାଇଛନ୍ତି ; କିନ୍ତୁ ବିକିବାକୁ ଆଜ୍ଞା ଦେଇନାହାନ୍ତି ।" ରାଜା ବଡ଼ ନମ୍ରତାପୂର୍ବକ କହିଲେ, "ଦେଖ, ଏହାର ମୂଲ୍ୟ ମୋ ରାଜ୍ୟ ଅପେକ୍ଷା ମଧ୍ୟ ଯଥେଷ୍ଟ ବେଶୀ । ତୁମ ଗୁରୁ ଯଦି ଏହାକୁ ବିକ୍ରି କରିବାକୁ ଚାହାଁନ୍ତି, ତେବେ ଏହା ବଦଳରେ ମୁଁ ମୋର ସାରା ରାଜ୍ୟ ଆନନ୍ଦରେ ଦେଇଦେବି । ତୁମେ ପୂଜ୍ୟ ଗୁରୁଜୀଙ୍କୁ ପଚ୍ଚାରି ବୁଝ ।" ସେହି ଗୁରୁଜୀ ଯେ ବଡ଼ ଉଚ୍ଚକୋଟିର ମହାତ୍ମା, ତାହା ସମସ୍ତେ ଜାଣିଥିଲେ । ତେଣୁ ସମସ୍ତେ ବଡ଼ ଆଦର-ସତ୍କାର ସହିତ ସେହି ଶିଷ୍ୟଙ୍କୁ ସେଠାରୁ ବିଦାୟ ଦେଲେ ।

ଶିଷ୍ୟଜଣକ ଗୁରୁଙ୍କ ନିକଟକୁ ଫେରିଆସି ତାଙ୍କୁ ସକଳ ବୃତ୍ତାନ୍ତ ଶୁଣାଇଲେ ଏବଂ ଶେଷରେ କହିଲେ, "ଗୁରୁଦେବ ! ମୋ ଛୋଟବୁଦ୍ଧିରେ ମୁଁ କହିବାକୁ ଚାହୁଁଛି ଯେ, ରାଜା ସାହେବ ଯେତେବେଳେ ଏହାର ମୂଲ୍ୟ ବାବଦରେ ସାରା ରାଜ୍ୟ ଦେଇଦେବାକୁ ପ୍ରସ୍ତୁତ, ସେତେବେଳେ ଏହାକୁ ବିକ୍ରି କରିଦେବା ଉଚିତ ।" ଗୁରୁ କହିଲେ, "ଏହାର ମୂଲ୍ୟ ବାବଦକୁ ରାଜ୍ୟ ତ କିଛି ନୁହେଁ କହିଲେ ଚଳେ । ଏପର୍ଯ୍ୟନ୍ତ ଏହାର ପ୍ରକୃତ ମୂଲ୍ୟ କେହି ଧାର୍ଯ୍ୟ କରିପାରିନାହାନ୍ତି ।" ଶିଷ୍ୟ ବିସ୍ମୟ ପ୍ରକାଶ କରି କହିଲେ, "ରାଜ୍ୟଠାରୁ ବଳି ଅଧିକ ମୂଲ୍ୟ ଆଉ କ'ଣ ହୋଇପାରେ ?" ଗୁରୁ ପଚ୍ଚାରିଲେ, "ଏଠାରେ କିଛି ଲୁହାଜିନିଷ ମିଳିବ କି ?" ଶିଷ୍ୟ କହିଲେ, "ହଁ ଆଜ୍ଞା, ଆଶ୍ରମକୁ କେତେକ ଯାତ୍ରୀ ଆସିଛନ୍ତି । ସେମାନଙ୍କ ପାଖରେ ତାଉଆ, ଚିମୁଟା, ଶଣ୍ଢଆସୀ ଆଦି ବହୁତ ଲୁହାଜିନିଷ ରହିଛି । ଆପଣ କହିଲେ, ସେମାନଙ୍କ ଠାରୁ କିଛି ନେଇଆସିବି ।" ଗୁରୁ କହିଲେ, "ହଁ, ନେଇଆସ ।"

ଶିଷ୍ୟ କେତେକ ଲୁହାଜିନିଷ ଆଣିଦେଲେ । ଗୁରୁ ସେସବୁକୁ ଏହି ପଥରରେ ସ୍ପର୍ଶ କରାଇଦେବା ସଙ୍ଗେ ସଙ୍ଗେ ଲୁହାଜିନିଷସବୁ ଖାଣ୍ଟି ସୁନା ପାଲଟିଗଲା । ତାହା ଦେଖି ଶିଷ୍ୟଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ବିସ୍ମିତ ହୋଇ

ପଗ୍ଚରିଲେ, ‘‘ଇଏ ତ ବଡ଼ ଅସାଧାରଣ ପଦାର୍ଥ । ଇଏ କି ପଦାର୍ଥ, ଗୁରୁଦେବ ?’’ ଗୁରୁ ଉତ୍ତର ଦେଲେ, ‘‘ଏହା ହେଉଛି ପରଶମଣି । ଏହାର ସ୍ପର୍ଶମାତ୍ରେ ହିଁ ଲୁହା ସୁନା ପାଲଟିଯାଏ । ତା’ହେଲେ ଏବେ ତୁ ହିଁ କହ, ଏହାର ମୂଲ୍ୟ କେତେ ହେବା ଉଚିତ ।’’ ଶିଷ୍ୟ କହିଲେ, ‘‘ଏ ସଂସାରରେ ସୁନାକୁ ସବୁଠାରୁ ବେଶୀ ମୂଲ୍ୟବାନ୍ ବସ୍ତୁ ବୋଲି କୁହାଯାଏ । ସେହି ସବୁଠାରୁ ବେଶୀ ମୂଲ୍ୟବାନ୍ ବସ୍ତୁ ସୁନା ଯେତେବେଳେ ଏହାଠାରୁ ଜାତ ହେଉଛି, ତା’ହେଲେ ଏହାର ମୂଲ୍ୟାୟନ କିପରି ବା କରାଯାଇ ପାରିବ !!’’

ଗୁରୁ କହିଲେ, ‘‘ଭଗବାନଙ୍କ ନାମର ମୂଲ୍ୟ ଏହାଠାରୁ ବି ଆହୁରି ଅଧିକ । କାରଣ ପରଶମଣି ତ ଜଡ଼ପଦାର୍ଥ ; ଏହାଦ୍ୱାରା କେବଳ ଜଡ଼ ପଦାର୍ଥ ପ୍ରାପ୍ତ ହୋଇପାରିବ ; ସଚ୍ଚିଦାନନ୍ଦ ପରମାତ୍ମା ମିଳିବେ ନାହିଁ । ଏଣୁ କୌଣସି ବି ସାଂସାରିକ ପଦାର୍ଥ ସହିତ ଭଗବାନଙ୍କ ନାମର ତୁଳନା କରିବା ସଂପୂର୍ଣ୍ଣ ଅନୁଚିତ । ଯେ ଅତି ନଗଣ୍ୟ, ତୁଚ୍ଛ ସାଂସାରିକ ପଦାର୍ଥ ସହିତ ଭଗବାନଙ୍କ ନାମର ତୁଳନା କରନ୍ତି, ପରଶମଣିକୁ ସେରେ-ଦେଢ଼ସେରେ ମୂଳା ବା ଆଳୁ ବା ପରିବା ମୂଲ୍ୟରେ ବିକିଦେବା ବ୍ୟକ୍ତିଙ୍କ ଠାରୁ ମଧ୍ୟ ସେ କମ୍ ମୂର୍ଖ ନୁହଁନ୍ତି । ପରଶମଣିକୁ ଚିହ୍ନି ନ ଥିବା ବ୍ୟକ୍ତି କାହାରିଠାରୁ ତୁଚ୍ଛ ପଦାର୍ଥ ନେଇ ତାକୁ ବିକିଦେଇ ସର୍ବଦା ଦରିଦ୍ର ହୋଇ ରହିଥାନ୍ତି । ସେହିପରି ରାମ-ନାମର ମହତ୍ତ୍ୱ ଜାଣି ନ ଥିବା ବ୍ୟକ୍ତି ମଧ୍ୟ ପ୍ରେମ ଓ ଭକ୍ତି ଦୃଷ୍ଟିରୁ ସର୍ବଦା ଦରିଦ୍ର ହୋଇ ରହେ । ତୁ ଭଗବାନଙ୍କ ନାମର ପ୍ରଭାବ, ତତ୍ତ୍ୱ ଓ ରହସ୍ୟ ଜାଣି ନ ଥିବାରୁ ଗୋଟିଏ ସାମାନ୍ୟ ରୋଗ ନିମନ୍ତେ ତିନିଥର ରାମ-ନାମର ପ୍ରୟୋଗ କରାଇଲୁ । ଯେଉଁ ନାମ ପ୍ରଭାବରେ ଭୟଙ୍କର ଭବରୋଗ, ମାରାତ୍ମକ ସଂସାରରୋଗ ଦୂର ହୋଇଯାଏ, ସେହି ନାମକୁ ତୁ ଏକ ସାମାନ୍ୟ ରୋଗର ନିରାକରଣ ନିମନ୍ତେ ଉପଯୋଗ କରିବା ନିପଟ ମୂର୍ଖତା । ତୋ’ର ଏହି ଅଜ୍ଞତା, ଏହି ମୂର୍ଖତା ଦୂର କରିବାପାଇଁ ହିଁ ମୁଁ ତୋତେ ପରଶମଣି ଦେଇ ସହରକୁ ପଠାଇଥିଲି ।’’

ଏହା ଶୁଣିବାମାତ୍ରେ ଶିଷ୍ୟ ଭଗବାନଙ୍କ ନାମର ପ୍ରଭାବ ଉପଲବ୍ଧି କଲେ ଏବଂ ନିଜର ଭୁଲ ପାଇଁ ଗୁରୁଙ୍କ ନିକଟରେ ବାରମ୍ବାର କ୍ଷମାଭିକ୍ଷା କରିବାକୁ ଲାଗିଲେ । ଏହି କାହାଣୀରୁ ଆମକୁ ଶିକ୍ଷା ମିଳେ ଯେ, ପରଶମଣିର ପ୍ରଭାବ ଜାଣି ନ ଥିବା ବ୍ୟକ୍ତିଙ୍କୁ ଯଦି ପରଶମଣି ମିଳିଯାଏ, ତେବେ ସେ ତାକୁ ଅଜ୍ଞାନବଶତଃ ଦୁଇ-ଚ୍ଚରି ଟଙ୍କାରେ ବିକିଦେଇ ପାରନ୍ତି । ଯଦି ସେହି ସାଧୁ ମହାତ୍ମା ତାଙ୍କ ଶିଷ୍ୟକୁ

ଉଚିତ ମୂଲ୍ୟରେ ପରଶମଣି ବିକିବାପାଇଁ କହିଦେଇଥାନ୍ତେ, ତେବେ ସେ ଖୁବ୍ ବେଶୀରେ ତାହା ପାଞ୍ଚଛଅ ସେର ଆଳୁ ବଦଳରେ ବା ଦଶ କି କୋଡ଼ିଏ ଟଙ୍କାରେ ନିଶ୍ଚୟ ବିକିଦେଇଥାନ୍ତେ ଏବଂ ତାକୁ ହିଁ ସେ ଅଧିକ ମୂଲ୍ୟ ବୋଲି ଭାବିଥାନ୍ତେ । ସେହିପରି ଯେଉଁ ବ୍ୟକ୍ତି ଭଗବାନଙ୍କ ନାମର ପ୍ରଭାବ ଜାଣନ୍ତି ନାହିଁ, ସେ ତାକୁ ସ୍ତ୍ରୀ, ପୁତ୍ର, ଧନ ଇତ୍ୟାଦି ବଦଳରେ ବିକିଦିଅନ୍ତି ।

## ଭଗବାନଙ୍କ ନାମର ରହସ୍ୟ

ଭଗବାନଙ୍କ ନାମରେ ପାପ ଧ୍ୱଂସ କରିବାର ଅସୀମ ଶକ୍ତି ରହିଛି ; ଏଥିରେ ଟିକିଏମାତ୍ର ସନ୍ଦେହ ନାହିଁ । ***'ନାମ ଅଖିଳ ଅଘପୁଂଜ ନସାଓ୍ୱନ'***- ଏହି ଉକ୍ତି ସଂପୂର୍ଣ୍ଣରୂପେ ସତ୍ୟ ; କିନ୍ତୁ ଲୋକମାନେ ଏହାର ରହସ୍ୟ ଜାଣି ନ ଥିବାରୁ ଏହାର ଦୁରୁପଯୋଗ କରିଥାନ୍ତି । ସେମାନଙ୍କର ଧାରଣା ଯେ, ନାମରେ ତ ପାପ ବିନାଶ କରିବାର ଅନନ୍ତ ଶକ୍ତି ରହିଛି ; ନାମ ତ ସବୁ ପାପ ଧୋଇଦିଏ ; ନାମ ମୋର ସବୁ ପାପ ମଧ୍ୟ ଧୋଇଦେବ ; ତେଣୁ ଆଜି କିଛି ପାପକର୍ମ କରିବି ; ପୁଣି କାଲିକି ନାମ ଜପ କରିବି ଯେ, ସେହି ପାପ ବି ଧୋଇ ହୋଇଯିବ । ଏହିପରି ଅନିଷ୍ଟକର ମନୋଭାବ ପୋଷଣ କରି ସେମାନେ ଅଧିକମାତ୍ରାରେ ପାପକର୍ମରେ ଲିପ୍ତ ହୋଇ ପାପକର୍ମରେ ବୁଡ଼ିରହନ୍ତି । ସେମାନେ ବିଚ୍ୟର କରନ୍ତି ନାହିଁ ଯେ, ଯଦି ତାଙ୍କର ଏପରି ମନୋଭାବ ସତ ହୋଇଥାଏ, ତେବେ ନାମଜପ ପାପର ହ୍ରାସ ନ ଘଟାଇ ବରଂ ପାପବୃଦ୍ଧିରେ ବିଶେଷ ସହାୟକ ହୋଇଯିବ । କାରଣ ଲୋକମାନେ ନାମର ଆଶ୍ରୟ ନେଇ ମନମୁତାବକ ଯାହା ଇଚ୍ଛା, ସେହି ପାପ କରିଚ୍ୟଲିବେ ଏବଂ ତା'ଦ୍ୱାରା ବର୍ତ୍ତମାନ ସମୟ ଅପେକ୍ଷା ଭବିଷ୍ୟତରେ ପାପର ମାତ୍ରା ବହୁତ ବଢିଯିବ । ପୁଲିସପୋଷାକ ପିନ୍ଧି ଚ୍ୟେରି କରୁଥିବା ବ୍ୟକ୍ତି ଯେପରି ଅନ୍ୟ ଚ୍ୟେରଙ୍କ ଅପେକ୍ଷା ଅଧିକ ଦଣ୍ଡନୀୟ ହୋଇଥାଏ, ସେହିପରି ଭଗବାନଙ୍କ ନାମକୁ ଆଳ କରି ପାପକର୍ମ କରୁଥିବା ବ୍ୟକ୍ତି ଅଧିକ ଦଣ୍ଡ ପାଇବାର ପାତ୍ର ହୋଇଥାନ୍ତି ; କାରଣ ତାଙ୍କର ପାପ ବଜ୍ରଲେପ ହୋଇଯାଏ ; ସେହି ଦୁଷ୍କର୍ମର ଦୁଃଖରୂପକ ଫଳ ଭୋଗ ନ ହେବା ପର୍ଯ୍ୟନ୍ତ ତାହାର ବିନାଶ ହୁଏ ନାହିଁ । ନାମଆଳରେ ପାପକର୍ମ କରିବା ତ ଦଶପ୍ରକାର ନାମ-ଅପରାଧ ମଧ୍ୟରୁ ଗୋଟିଏ ଅପରାଧ । ଦଶପ୍ରକାର ନାମ-ଅପରାଧ ରହିଛି, ଯଥା–

***ସନ୍ନିନ୍ଦାସତି ନାମବୈଭବକଥା ଶ୍ରୀଶେଶୟୋର୍ଭେଦଧୀ–***
***ରଶ୍ରଦ୍ଧା ଶ୍ରୁତିଶାସ୍ତ୍ରଦୈଶିକଗିରାଂ ନାମ୍ନ୍ୟର୍ଥବାଦଭ୍ରମଃ ।***
***ନାମାସ୍ତୀତି ନିଷିଦ୍ଧବୃତ୍ତିବିହିତତ୍ୟାଗୌ ହି ଧର୍ମାନ୍ତରୈଃ***
***ସାମ୍ୟଂ ନାମଜପେ ଶିବସ୍ୟ ଚ ହରେର୍ନାମାପରାଧା ଦଶ ॥***

(୧) ସତ୍ପୁରୁଷଙ୍କର ଅର୍ଥାତ୍ ଈଶ୍ୱରଙ୍କର ଭଜନ-ଧ୍ୟାନ କରୁଥିବା ବ୍ୟକ୍ତିଙ୍କର ନିନ୍ଦା ବା କୁତ୍ସାରଟନା ; (୨) ଅଶ୍ରଦ୍ଧାଳୁ ବ୍ୟକ୍ତିମାନଙ୍କୁ ନାମର ମହିମା କହିବା ; (୩) ବିଷ୍ଣୁ ଓ ଶିବଙ୍କ ନାମ-ରୂପରେ ଭେଦବୁଦ୍ଧି ରଖିବା, (୪)(୫)(୬)- ବେଦ, ଶାସ୍ତ୍ର ଓ ଗୁରୁଙ୍କ ଦ୍ୱାରା କଥିତ ନାମମାହାତ୍ମ୍ୟରେ ଅବିଶ୍ୱାସ ; (୭) ଭଗବନ୍ନାମରେ ଅର୍ଥବାଦର ଭ୍ରମ ଅର୍ଥାତ୍ ନାମମହିମା କେବଳ ସ୍ତୁତିମାତ୍ର, ଏହିପରି ମନୋଭାବ ପୋଷଣ ; (୮)(୯)– ନାମକୁ ଆଳ କରି ଶାସ୍ତ୍ରବିହିତ କର୍ମ ତ୍ୟାଗ, କର୍ତ୍ତବ୍ୟକର୍ମ ତ୍ୟାଗ ଏବଂ ନିଷିଦ୍ଧକର୍ମ ଆଚରଣ (୧୦) ଅନ୍ୟ ଧର୍ମ ସହିତ ନାମର ତୁଳନା ଅର୍ଥାତ୍ ଅଶାସ୍ତ୍ରବିହିତ କର୍ମ ସହିତ ତୁଳନା– ଭଗବାନ୍ ଶିବ ଓ ବିଷ୍ଣୁଙ୍କ ନାମଜପରେ ଏପରି ଦଶପ୍ରକାର ନାମ-ଅପରାଧ ରହିଛି ।

ଏହି ଦଶପ୍ରକାର ନାମ-ଅପରାଧରୁ ନିଜକୁ ମୁକ୍ତ ନ କରି ଯେ ନାମ ଜପ କରନ୍ତି, ସେ ନାମର ରହସ୍ୟ ବୁଝିପାରନ୍ତି ନାହିଁ ।

ବାଣୀଦ୍ୱାରା ନାମ ଜପ କରିବା ଅପେକ୍ଷା ମନେ ମନେ ନାମ ଜପ କରିବା ହେଉଛି ଶହେଗୁଣ ଅଧିକ ଲାଭଦାୟକ ଏବଂ ସେହି ମାନସିକ ଜପ ଯଦି ଶ୍ରଦ୍ଧା ଓ ପ୍ରେମପୂର୍ବକ କରାଯାଏ, ତେବେ ତାହା ଅନନ୍ତ ଫଳ ପ୍ରଦାନ କରେ । ଯଦି ତାହା ଗୁପ୍ତ ଓ ନିଷ୍କାମଭାବରେ କରାଯାଏ, ତେବେ ଶୀଘ୍ର ପରମାତ୍ମାଙ୍କ ପ୍ରାପ୍ତି ହୋଇଥାଏ । ସୁତରାଂ ଏହି ରହସ୍ୟକୁ ଉତ୍ତମରୂପେ ଉପଲବ୍ଧି କରି ଭଗବନ୍ନାମର ଆଶ୍ରୟ ଗ୍ରହଣ କରିବା ବିଧେୟ ।

## ଭଗବାନଙ୍କ ନାମର ତତ୍ତ୍ୱ

ବାସ୍ତବିକ ନାମ ଓ ନାମୀଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ସେମାନେ ଭିନ୍ନ ଜଣା ଯାଉଥିଲେ ମଧ୍ୟ ସଂପୂର୍ଣ୍ଣରୂପେ ଅଭିନ୍ନ । ଗୀତାରେ ଭଗବାନ୍ କହିଛନ୍ତି– ***'ଯଜ୍ଞାନାଂ ଜପଯଜ୍ଞୋଽସ୍ମି'*** (୧୦।୨୫) । 'ଯଜ୍ଞମାନଙ୍କ ମଧ୍ୟରେ ମୁଁ ହେଉଛି ଜପଯଜ୍ଞ' ଅର୍ଥାତ୍ ଅନ୍ୟ ସକଳ ଯଜ୍ଞ ତ ମୋର ପ୍ରାପ୍ତିର ସାଧନ, କିନ୍ତୁ ଜପଯଜ୍ଞ (ନାମ-ଜପ) ହେଉଛି ସ୍ୱୟଂ ନିଜେ ମୁଁ ।' ଯେ ଏହି ତତ୍ତ୍ୱ ହୃଦୟଙ୍ଗମ କରିଥା'ନ୍ତି, ସଠିକ୍‌ଭାବରେ ଉପଲବ୍ଧି କରିଥା'ନ୍ତି, ସେ କେବେ ହେଲେ ନାମ ପାସୋରି ପାରନ୍ତି ନାହିଁ ।

## ଭଗବାନଙ୍କ ନାମର ଗୁଣ

ଯେ ନିତ୍ୟ-ନିରନ୍ତର ଭଗବାନଙ୍କ ନାମ ଜପ କରିବାରେ ଲାଗିଥାଆନ୍ତି, ସେ ସଦ୍‌ଗୁଣର ସାଗର ହୋଇଯାଆନ୍ତି । ସମୁଦ୍ରରେ ଯେପରି ଅନନ୍ତ ଜଳରାଶି

ରହିଥାଏ, ତାଙ୍କ ଠାରେ ସେହିପରି ଅନନ୍ତ ସଦ୍‌ଗୁଣ ନିବାସ କରିଥାନ୍ତି । ଏଥିରୁ ପ୍ରମାଣିତ ହୁଏ ଯେ, ନାମ ହେଉଛି ବୀଜ ସଦୃଶ । ଯେପରି ବୀଜ ବୁଣିଦେଲେ ସେଥିରୁ ଗଜା ବାହାରିପଡ଼େ ଏବଂ ତାହା ଦିନେ ବଡ଼ ହୋଇ, ପୁଷ୍ପିତ ଓ ପଲ୍ଲବିତ ହୋଇ ବିଶାଳ ବୃକ୍ଷରୂପେ ଦଣ୍ଡାୟମାନ ହୁଏ, ସେହିପରି ନାମ ଜପ କରୁଥିବା ବ୍ୟକ୍ତିଙ୍କ ଠାରେ ଅନାୟାସରେ ସକଳ ସଦ୍‌ଗୁଣର ବିଶେଷ ବୃଦ୍ଧି ହୋଇଥାଏ ।

ତେଣୁ ମନୁଷ୍ୟ ଭଗବାନଙ୍କ ନାମର ଗୁଣ, ପ୍ରଭାବ, ତତ୍ତ୍ୱ ଏବଂ ରହସ୍ୟ ହୃଦୟଙ୍ଗମ କରିବା ଉଚିତ । ଏହିପରି ହୃଦୟଙ୍ଗମ କରିପାରିଲେ, ତାଙ୍କର ନାମ ପ୍ରତି ପରମ ଶ୍ରଦ୍ଧା ଉତ୍ପନ୍ନ ହୁଏ ଏବଂ ଶ୍ରଦ୍ଧା ସହିତ କରାଯାଉଥିବା ଜପ ହିଁ ତତ୍‌କ୍ଷଣାତ୍ ଫଳ ପ୍ରଦାନ କରିଥାଏ । ସୁତରାଂ ଭଗବାନଙ୍କ ନାମ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଉତ୍ପନ୍ନ ହେବା ନିମନ୍ତେ ଆମେ ସତ୍‌ପୁରୁଷଙ୍କ ସଙ୍ଗ କରିବା ଉଚିତ । ସତ୍‌ପୁରୁଷଙ୍କର ସଙ୍ଗ ନ ମିଳିଲେ ଆମେ ସତ୍‌ଶାସ୍ତ୍ରର– ଯେଉଁଥିରେ ଭଗବାନ୍ ଏବଂ ତାଙ୍କ ନାମର ତତ୍ତ୍ୱ, ରହସ୍ୟ, ଗୁଣ, ପ୍ରଭାବ, ଶ୍ରଦ୍ଧା ଓ ପ୍ରେମ ବିଷୟ ବର୍ଣ୍ଣିତ ହୋଇଛି, ସୂଚିତ ହୋଇଛି, ସେହି ସକଳ ଶାସ୍ତ୍ର ଅଧ୍ୟୟନ–ଅନୁଶୀଳନ କରିବା ଆବଶ୍ୟକ । ଏପରି କରିବାଦ୍ୱାରା ଭଗବନ୍ନାମରେ ଶ୍ରଦ୍ଧା ଓ ପ୍ରେମ ଉତ୍ପନ୍ନ ହୋଇଥାଏ ଏବଂ ଜପର ଶାସ୍ତ୍ରବର୍ଣ୍ଣିତ ଫଳ ମଧ୍ୟ ତତ୍‌କ୍ଷଣାତ୍ ପ୍ରତ୍ୟକ୍ଷ ଦେଖିବାକୁ ମିଳିଥାଏ ।

*ହରି ଓଁ ତତ୍ ସତ୍*

~~ O ~~

# ୫. ଶୀଘ୍ର ଭଗବତ୍‌ପ୍ରାପ୍ତି ନିମନ୍ତେ ଭାବ ହିଁ ପ୍ରଧାନ ସାଧନ

ସଂସାରରେ କ୍ରିୟା ଅପେକ୍ଷା ଭାବ ହେଉଛି ଅଧିକ ଫଳପ୍ରଦ । ଅତି ଛୋଟ କ୍ରିୟା ମଧ୍ୟ ଭାବର ପ୍ରଧାନତା ହେତୁ ମୁକ୍ତି ପ୍ରଦାନ କରାଇଦେଇ ପାରେ ଏବଂ ଅତି ଉତ୍ତମ କ୍ରିୟା ମଧ୍ୟ ନିମ୍ନସ୍ତରର ଭାବ ହେତୁ ନରକ ଆଡ଼କୁ ଟାଣି ନେଇଥାଏ । ଯଦି କେହି ଅନ୍ୟମାନଙ୍କର ଅନିଷ୍ଟ ବା ବିନାଶ ସାଧନ ନିମନ୍ତେ ଜପ, ତପ, ଧ୍ୟାନ, ସ୍ତୁତି, ପ୍ରାର୍ଥନା, ପୂଜା, ପାଠ ଓ ଯଜ୍ଞ କରନ୍ତି, ତେବେ ସେସବୁର ଫଳସ୍ୱରୂପ କର୍ତ୍ତାଙ୍କୁ ନରକପ୍ରାପ୍ତି ହୋଇଥାଏ । ଉପରୋକ୍ତ ଅନୁଷ୍ଠାନ ଆଦି କ୍ରିୟା ଯଦିଓ ଅତି ଉତ୍ତମ, ତଥାପି ତାମସିକ ଭାବ ନେଇ କରାଯାଉଥିବାରୁ ତାହା କର୍ତ୍ତାଙ୍କର ଅଧୋଗତିର କାରଣ ହୋଇଥାଏ । ଭଗବାନ୍ କହିଛନ୍ତି–

***ଜଘନ୍ୟଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ।***

*(ଗୀତା ୧୪।୧୮)*

‘‘ତମୋଗୁଣର କାର୍ଯ୍ୟରୂପୀ ନିଦ୍ରା, ପ୍ରମାଦ ଓ ଆଳସ୍ୟାଦିରେ ସ୍ଥିତ ତାମସିକ ବ୍ୟକ୍ତିମାନେ ଅଧୋଗତି ଅର୍ଥାତ୍ କୀଟ, ପଶୁ ଆଦି ନୀଚଯୋନି ତଥା ନରକ ପ୍ରାପ୍ତ ହୁଅନ୍ତି ।’’

ଯେତେବେଳେ ଏହି ସକଳ ଉତ୍ତମ କ୍ରିୟା ସ୍ତ୍ରୀ, ଧନ, ପୁତ୍ର ଆଦି ପ୍ରାପ୍ତି ନିମନ୍ତେ ଅଥବା ରୋଗନିବୃତ୍ତି ନିମନ୍ତେ କରାଯାଏ, ସେତେବେଳେ ରାଜସିକ ଭାବ ପୋଷଣ କରି କ୍ରିୟା କରାଯାଉଥିବାରୁ ତଦ୍ୱାରା ମଧ୍ୟମ ଗତି ପ୍ରାପ୍ତ ହୁଏ । ତାତ୍ପର୍ଯ୍ୟ ହେଲା, ଯେପରି ଭାବ ନେଇ କ୍ରିୟା କରାଯାଏ, ସେହିପରି ଫଳ ହିଁ ପ୍ରାପ୍ତି ହୋଇଥାଏ । ଉପରୋକ୍ତ ଉତ୍ତମ କ୍ରିୟା ଯଦି କର୍ତ୍ତବ୍ୟଜ୍ଞାନରେ ନିଷ୍କାମ ଓ

ପ୍ରେମଭାବପୂର୍ବକ ଭଗବତ୍‌ପ୍ରୀତ୍ୟର୍ଥେ କରାଯାଏ, ତେବେ ଅନ୍ତଃକରଣ ଶୁଦ୍ଧ ହୋଇ ଭଗବତ୍‌ପ୍ରାପ୍ତି ହୋଇଥାଏ । ଏପରିଭାବରେ କ୍ରିୟା ତାର ଭାବ ଅନୁସାରେ ହିଁ ଉତ୍ତମ, ମଧ୍ୟମ ବା ଅଧମ ଫଳ ପ୍ରଦାନ କରିଥାଏ । କୌଣସି ନିମ୍ନଶ୍ରେଣୀର କ୍ରିୟା ଯଦି ଦିବ୍ୟଭାବର ସହିତ କରାଯାଏ, ତା'ହେଲେ ସେହି କ୍ରିୟା ମଧ୍ୟ ମୁକ୍ତି ପ୍ରଦାୟକ ହୋଇଯାଏ । ମାତା-ପିତା ଓ ଗୁରୁଜନରୂପେ ପିଲାଙ୍କୁ ଶିକ୍ଷାଦାନ ତଥା ପାଳନ-ପୋଷଣ କରିବା, ସେମାନଙ୍କର ମଳ-ମୂତ୍ର ସଫା କରିବା, ଡାକ୍ତରରୂପେ ରୋଗୀର ଚିକିତ୍ସା କରିବା, ରାସ୍ତା ସଫା କରିବା, ରୋଷେଇ ନିମନ୍ତେ ଜାଳେଣୀକାଠ ବୋହି ଆଣିବା, ବ୍ୟବହାର୍ଯ୍ୟ ସାମଗ୍ରୀମାନଙ୍କର ନ୍ୟାୟସଙ୍ଗତ କ୍ରୟ-ବିକ୍ରୟ କରିବା, ଭୃତ୍ୟ ପରି ସେବାକାର୍ଯ୍ୟ କରିବା, ଏପରି କି ଦୁର୍ଗନ୍ଧ ନିରାକରଣ ନିମନ୍ତେ ମଳ-ମୂତ୍ର ସଫା କରିବା ଇତ୍ୟାଦି ଯେଉଁସବୁ ନିମ୍ନଶ୍ରେଣୀର କ୍ରିୟା, ସେସବୁକୁ ବି ଯଦି କର୍ତ୍ତବ୍ୟବୁଦ୍ଧିରେ ନିଷ୍କାମ ଓ ପ୍ରେମଭାବରେ କରାଯାଏ, ତେବେ ସେସବୁର ପରିଣାମସ୍ୱରୂପ ଅନ୍ତଃକରଣ ଶୁଦ୍ଧ ହୋଇ ପରମାତ୍ମପ୍ରାପ୍ତି ହୋଇପାରେ । କିନ୍ତୁ ସେସବୁ କ୍ରିୟା ସକାମଭାବରେ କରାଗଲେ ତାହାଦ୍ୱାରା କେବଳ ଅର୍ଥପ୍ରାପ୍ତି ହୋଇଥାଏ ।

କଥିତ ଅଛି, ଭକ୍ତିମତୀ ଶବରୀ ମୁନିଋଷିଙ୍କ ଗମନାଗମନ ରାସ୍ତା ସଫା କରୁଥିଲେ ତଥା ରାସ୍ତାର ଅଳିଆ-ଆବର୍ଜନା ଓ କଣ୍ଟା ଇତ୍ୟାଦି ସଫା କରି ଦୂରରେ ଫୋପାଡ଼ିଦେଇ ଆସୁଥିଲେ; ବନରୁ କାଠ ସଂଗ୍ରହ କରି ମୁନିଋଷିଙ୍କ ଆଶ୍ରମ ନିକଟରେ ଆଣି ରଖିଦେଉଥିଲେ । ଏସବୁ କର୍ମ ନିମ୍ନଶ୍ରେଣୀର ପରି ଜଣାଯାଉଥିଲେ ମଧ୍ୟ ଶବରୀ ଏସବୁ ନିଷ୍କାମ ଭାବରେ, କର୍ତ୍ତବ୍ୟଜ୍ଞାନରେ, ଈଶ୍ୱରଙ୍କ ସେବାକାର୍ଯ୍ୟ ବୋଲି ମନେକରି କରୁଥିଲେ ; ଏଣୁ ତାଙ୍କର ଭାବ ଉତ୍ତମ ହୋଇଥିବାରୁ ତାଙ୍କ ଅନ୍ତଃକରଣ ଶୁଦ୍ଧ ହୋଇ ତାଙ୍କୁ ଭଗବତ୍‌ପ୍ରାପ୍ତି ହୋଇଗଲା ।

ଏ ବିଷୟରେ ପଦ୍ମପୁରାଣରେ କୁହାଯାଇଛି :—

ଯେତେବେଳେ ନରୋତ୍ତମ ବ୍ରାହ୍ମଣ ତୁଳାଧାର ବୈଶ୍ୟଙ୍କ ନିକଟକୁ ଗଲେ, ସେତେବେଳକୁ ତୁଳାଧାର ଗ୍ରାହକମାନଙ୍କୁ ଜିନିଷପତ୍ର ବିକିବାରେ ବ୍ୟସ୍ତ ଥିଲେ । ତେଣୁ ସେ କହିଲେ, "ବର୍ତ୍ତମାନ ମୋର ଫୁରୁସତ୍ ନାହିଁ । ପ୍ରହରେ ରାତ୍ରି ପର୍ଯ୍ୟନ୍ତ ଗ୍ରାହକଙ୍କର ଭିଡ଼ ଲାଗିରହିବ; ତା'ପରେ ମୋତେ ଫୁରୁସତ୍ ମିଳିପାରେ । ଯଦି ଆପଣ ସେତେ ଡେରି ପର୍ଯ୍ୟନ୍ତ ଅପେକ୍ଷା କରିପାରିବେ ନାହିଁ, ତେବେ ଦୟା କରି

ଆପଣ ସଜ୍ଜନ ଅଦ୍ରୋହକଙ୍କ ନିକଟକୁ ଯାଆନ୍ତୁ । ଆପଣଙ୍କ ଦ୍ୱାରା ଯେଉଁ ବଗ ନିହତ ହେଲା ଏବଂ ଆପଣଙ୍କର ଧୋତି ଆକାଶରେ ଶୁଖିବା ବନ୍ଦ ହୋଇଗଲା, ତାଙ୍କ ପାଖକୁ ଗଲେ ସେସବୁର ରହସ୍ୟ ଆପଣଙ୍କୁ ଜଣାପଡ଼ିଯିବ ।'' ନରୋତ୍ତମଙ୍କ ସହିତ ବ୍ରାହ୍ମଣ ବେଶରେ ଯାଇଥିବା ଭଗବାନ୍ କହିଲେ, ''ଚାଲ, ଆମେ ସଜ୍ଜନ ଅଦ୍ରୋହକଙ୍କ ନିକଟକୁ ଯିବା ।'' ଏହା କହି ସେ ସେଠାରୁ ସଜ୍ଜନ ଅଦ୍ରୋହକଙ୍କ ନିକଟକୁ ଯିବାକୁ ଲାଗିଲେ । ରାସ୍ତାରେ ନରୋତ୍ତମ ତାଙ୍କୁ ପଚାରିଲେ, ''ମୋ ଦ୍ୱାରା ବଗଟି ଭସ୍ମ ହେବା ବିଷୟ ତୁଳାଧାର। କିପରି ଜାଣିଲେ ?'' ଭଗବାନ୍ କହିଲେ, ''କ୍ରୟ-ବିକ୍ରୟ କରିବାବେଳେ ତୁଳାଧାର ସମସ୍ତଙ୍କ ସହିତ ସତ୍ୟ ଓ ସମାନ ବ୍ୟବହାର କରନ୍ତି ; ତେଣୁ ସେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ– ତିନିକାଳର କଥା ଜାଣିପାରନ୍ତି । ସେ ତ୍ରିକାଳଜ୍ଞ ।'' ତେଣୁ ତୁଳାଧାରଙ୍କ ଘରେ ଭଗବାନ୍ ବ୍ରାହ୍ମଣରୂପ ଧରି ନିବାସ କରୁଥିଲେ ଏବଂ ଶେଷରେ ସେହି ତୁଳାଧାର ବୈଶ୍ୟ ଭଗବାନଙ୍କ ସହିତ ବିମାନରେ ବସି ପରମଧାମକୁ ଗମନ କଲେ ।

ଏଠାରେ ବିଚାରଯୋଗ୍ୟ ଯେ, ତୁଳାଧାର ବୈଶ୍ୟଙ୍କର ରସ ଆଦି କ୍ରୟ-ବିକ୍ରୟରୂପୀ କ୍ରିୟା ତ ଦେଖିବାକୁ ନିମ୍ନଶ୍ରେଣୀର ; କିନ୍ତୁ ସ୍ୱାର୍ଥତ୍ୟାଗ, ସାଧୁତା, ସତ୍ୟପରାୟଣତା ତଥା ସମତାପୂର୍ଣ୍ଣ ବ୍ୟବହାର ଯୋଗୁ ସେହି କ୍ରିୟା ଉଚ୍ଚକୋଟିରେ ପରିଣତ ହୋଇ ତାଙ୍କୁ ପରମପଦ ପ୍ରାପ୍ତି କରାଇଦେଲା ।

ଏଥିରୁ ପ୍ରମାଣିତ ହୁଏ ଯେ, ଭାବ ହେଉଛି ପ୍ରଧାନ ; କ୍ରିୟା ନୁହେଁ । ଏଣୁ ଆମର ଉଚିତ ଯେ, ଆମେ ଯେତେବେଳେ କୌଣସି କ୍ରିୟା କରିବା, ସେତେବେଳେ ତାହା ଅତି ଉତ୍ତମଭାବର ସହିତ କରିବା ।

ଯଦି ଅତି ନୀଚ କ୍ରିୟା ବି ଉତ୍ତମ ଭାବର ସହିତ କରାଗଲେ ଅତି ଉତ୍ତମ ଗତି ପ୍ରଦାନ କରିପାରୁଛି, ତେବେ ଯେଉଁଠି କ୍ରିୟା ବି ଅତି ଉତ୍ତମ ଏବଂ ଭାବ ବି ଅତି ଉତ୍ତମ, ସେଠାରେ କହିବାର ବା କ'ଣ ଅଛି ! ଏହି ଭାବଟି ବୁଝିବାକୁ ହେଲେ, ନିମ୍ନଲିଖିତ କାହାଣୀଟି ଅନୁଧ୍ୟାନ କରନ୍ତୁ–

ଭଗବାନଙ୍କର ଜଣେ ସାଧକ ଭକ୍ତ ଥିଲେ । ସେ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ତଳେ ରହି ଭଜନ-ଧ୍ୟାନ, ଗୀତାପାଠ, ସାଧୁସେବା, ତପ ଓ ଉପବାସ ଆଦି କ୍ରିୟା କରନ୍ତି । ଥରେ ଦେବର୍ଷି ନାରଦ ସେଠାରେ ପଦାର୍ପଣ କଲେ । ସାଧକଜଣକ ତାଙ୍କର ଖୁବ୍ ଆଦର-ସତ୍କାର, ସେବା-ଶୁଶ୍ରୂଷା କଲେ । ଶେଷରେ ଦେବର୍ଷି ନାରଦ

ଯେତେବେଳେ ସେଠାରୁ ଯିବାକୁ ବାହାରିଲେ, ସେ ନାରଦଙ୍କୁ ପଚ୍ଚରିଲେ, "ଭଗବନ୍ ! ଆପଣ କେଉଁଠାକୁ ଯାଉଛନ୍ତି ?" ନାରଦ କହିଲେ, "ମୁଁ ଭଗବାନଙ୍କ ପାଖକୁ ଯାଉଛି ।" ସେ ନାରଦଙ୍କ ପାଦରେ ମୁଣ୍ଡ ଲଗାଇ, ନମସ୍କାର କରି, ହାତ ଯୋଡ଼ି, ଅତ୍ୟନ୍ତ ଉତ୍ସୁକତାପୂର୍ବକ ବିନମ୍ରଭାବରେ ପ୍ରାର୍ଥନା କରି କହିଲେ, "ଆପଣ ଦୟା କରି ମୋ ପାଇଁ ଟିକିଏ କଷ୍ଟ ସ୍ୱୀକାର କରିବେ; ଭଗବାନଙ୍କୁ ପଚ୍ଚରିବେ, ମୋତେ କେବେ ତାଙ୍କର ଶୁଭଦର୍ଶନ ମିଳିବ ।" ନାରଦ କହିଲେ, 'ହଁ, ହଁ, ନିଶ୍ଚୟ ପଚ୍ଚରିବି ଏବଂ ଫେରିବାବେଳେ ତୁମକୁ ଉତ୍ତର କହିଦେଇ ଯିବି ।" ଏହା କହି ନାରଦ ସେଠାରୁ ଚ୍ଚଲିଗଲେ ଏବଂ ଅତ୍ୟନ୍ତ ପ୍ରେମର ସହିତ ଭଗବାନଙ୍କର ନାମ ଓ ଗୁଣକୀର୍ତ୍ତନ କରି କରି ବୈକୁଣ୍ଠଧାମରେ ପ୍ରବେଶ କଲେ ।

ଭଗବାନ୍ ପଚ୍ଚରିଲେ, "ନାରଦ ! ତୁମେ କେଉଁଠାରୁ ଆସିଲ ?" ନାରଦ କହିଲେ, "ପ୍ରଭୋ ! ଗୋଟିଏ ଗଛତଳେ ଆପଣଙ୍କର ଜଣେ ଭକ୍ତ ଆପଣଙ୍କ ଭଜନ, ଧ୍ୟାନ ଓ ତପସ୍ୟାରେ ସଦା ରତ ଅଛନ୍ତି । ବର୍ତ୍ତମାନ ମୁଁ ତାଙ୍କରି ପାଖରୁ ଆସୁଛି । ଭଗବନ୍ ! ତାଙ୍କର ସେବା-ପୂଜା, ଭଜନ-ଧ୍ୟାନ ଓ ତପସ୍ୟା ଅତ୍ୟନ୍ତ ପ୍ରଶଂସନୀୟ । ପ୍ରଭୋ ! ସେ ମୋ ମାଧ୍ୟମରେ ଆପଣଙ୍କୁ ପଚ୍ଚରିଛନ୍ତି, ତାଙ୍କୁ ଆପଣଙ୍କ ଦର୍ଶନ କେବେ ମିଳିବ ।" ଭଗବାନ୍ କହିଲେ, "ନାରଦ ! ଏ କଥା ଆଉ ପଚ୍ଚର ନାହିଁ ।" ନାରଦଙ୍କର ଉତ୍ସୁକତା ଆହୁରି ବଢିଗଲା । ସେ କହିଲେ, "କାହିଁକି ପଚ୍ଚରିବିନି, ଭଗବନ୍ ?" ଭଗବାନ୍ ଉତ୍ତର ଦେଲେ, "ନାରଦ ! ସେ ଯେଉଁପରି ଭଜନ-ଧ୍ୟାନ, ସେବା-ଶୁଶ୍ରୂଷା ଓ ତପସ୍ୟା କରୁଛନ୍ତି, ସେହିପରି କରିଚ୍ଚଲିଥିଲେ ତ ତାଙ୍କୁ ମୋର ଦର୍ଶନ ମିଳିବାରେ ବହୁତ ବିଳମ୍ବ ହେବ । ସେପରି ସାଧନା କଲେ ତ ସେହି ଅଶ୍ୱତ୍ଥବୃକ୍ଷରେ ଯେତିକି ପତ୍ର ରହିଛି, ତାଙ୍କୁ ସେତିକି ବର୍ଷ ପରେ ମୋର ଦର୍ଶନ ମିଳିବ ।" ଭଗବାନଙ୍କର ଏ କଥା ଶୁଣି ନାରଦ ଟିକିଏ ଶଙ୍କିଗଲେ । ସେ ବିସ୍ମିତ ହୋଇ କହିଲେ, "ଭଗବନ୍ ! ସେ ତ ଖୁବ୍ ସୁନ୍ଦରରୂପେ ନିରଳସଭାବରେ ସେବା-ଶୁଶ୍ରୂଷା, ଜପ-ଧ୍ୟାନ, ତପସ୍ୟା ଆଦି କରିବାରେ ଲାଗି ରହିଛନ୍ତି ; ତାଙ୍କ ପକ୍ଷରେ ଏତେ ବିଳମ୍ବ କାହିଁକି ?" ଭଗବାନ୍ କହିଲେ, "ନାରଦ ! ତୁମେ ଏହାର ରହସ୍ୟ ଜାଣିନାହିଁ ; ମୁଁ ଯାହା କହୁଛି, ତାଙ୍କୁ ସେହି କଥା ଜଣାଇଦିଅ ।" ତା'ପରେ ନାରଦ ଭଗବାନଙ୍କ ସହିତ ଭକ୍ତି, ପ୍ରେମ, ଜ୍ଞାନ, ବୈରାଗ୍ୟ ସମ୍ବନ୍ଧରେ ବିଶେଷ ଆଲୋଚନା କଲେ ।

ନାରଦ ଭଗବାନଙ୍କ ନିକଟରୁ ଫେରିଆସି ଅଶ୍ୱତ୍ଥବୃକ୍ଷ ତଳେ ବସିଥିବା ସେହି ଭକ୍ତଙ୍କ ପାଖରେ ପହଞ୍ଚିଲେ । ନାରଦଙ୍କୁ ଦେଖିବାମାତ୍ରେ ଭକ୍ତଜଣକ ତାଙ୍କ ପାଦତଳେ ପଡ଼ି ପ୍ରଣାମ କଲେ ଏବଂ ଆଗ୍ରହପୂର୍ବକ ପଚ୍ଚାରିଲେ, "ପ୍ରଭୋ ! ମୋ କଥା ସେଠାରେ ପଡ଼ିଥିଲା କି ?" ତାଙ୍କର ବ୍ୟାକୁଳତାଭରା ବାଣୀ ଶୁଣି ନାରଦ ମୁଗ୍ଧ ହୋଇଗଲେ ; କହିଲେ, "ହଁ, ତୁମ କଥା ତ ପଡ଼ିଥିଲା ; କିନ୍ତୁ କହିବାକୁ ସଂକୋଚ ବୋଧ ହେଉଛି ।" ଭକ୍ତ କହିଲେ, "ଭଗବନ୍ ! ସଂକୋଚ କାହିଁକି ? କ'ଣ ଭଗବାନ୍ ସଫା ମନା କରିଦେଲେ ? କ'ଣ ଏ ଜନ୍ମରେ ମୋତେ ଭଗବାନଙ୍କ ଦର୍ଶନ ମିଳିବ ନାହିଁ ? ଯାହା ବି ହେଉ ନା କାହିଁକି, ସତ କଥାଟା କ'ଣ, ତାହା ଆପଣ ମୋତେ କହନ୍ତୁ । ଆପଣ ସଂକୋଚ କରନ୍ତୁ ନାହିଁ ; ମୋ ମନରେ ଦୁଃଖ ହେବ ନାହିଁ ।"

ସେ ଆଗ୍ରହ ପ୍ରକାଶ କରିବାରୁ ନାରଦ ସମସ୍ତ ବୃତ୍ତାନ୍ତ ଅବିକଳ ଜଣାଇଦେଲେ ଏବଂ କହିଲେ, "ଶେଷରେ ଭଗବାନ୍ ତୁମ ପାଇଁ କହିପଠାଇଛନ୍ତି ଯେ, ଏପରି ସାଧନା କଲେ ଏହି ଅଶ୍ୱତ୍ଥ ବୃକ୍ଷରେ ଯେତିକି ପତ୍ର ରହିଛି, ସେତିକି ବର୍ଷ ପରେ ହିଁ ତାଙ୍କ ଦର୍ଶନ ମିଳିବ ।" ଏତକ ଶୁଣିବାମାତ୍ରେ ସେହି ଭକ୍ତ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ ଏବଂ ପ୍ରେମପୂର୍ବକ ଗଦ୍‌ଗଦ କଣ୍ଠରେ କହିବାକୁ ଲାଗିଲେ, "କ'ଣ ମୋ ପରି ଅଧମକୁ ଭଗବାନଙ୍କର ଦର୍ଶନ ମିଳିବ ? କ'ଣ ଏ କଥା ଭଗବାନ୍ ସ୍ୱୟଂ ନିଜ ଶ୍ରୀମୁଖରେ କହିଛନ୍ତି ? ଆଃ ! ଯେବେ ହେଉ ନା କାହିଁକି, ଯେତେ ଡେରି ବି ହେଉ ନା କାହିଁକି, ମୋତେ ଭଗବାନଙ୍କ ଦର୍ଶନ ତ ଅବଶ୍ୟ ମିଳିବ !" ନାରଦ କହିଲେ, "ମିଳିବ ତ ନିଶ୍ଚୟ ; ତାହା ନିରାଟ ସତ୍ୟ ; ସେଥିରେ ଅଣୁମାତ୍ର ସନ୍ଦେହ ନାହିଁ ; କାରଣ ଭଗବାନ୍ ସ୍ୱୟଂ ନିଜ ମୁଖରେ ଏ କଥା କହିଛନ୍ତି ; କିନ୍ତୁ ମିଳିବ ବହୁତ ଡେରିରେ ।" ଭଗବାନଙ୍କ ଦର୍ଶନ ନିଶ୍ଚୟ ମିଳିବ ବୋଲି ଶୁଣି ସେହି ଭକ୍ତଙ୍କର ଆନନ୍ଦର ସୀମା ରହିଲା ନାହିଁ । ତାଙ୍କର ଭାବ ପୂରାପୂରି ବଦଳିଗଲା । ସେ ଆନନ୍ଦବିହ୍ୱଳ ହୋଇ, ପ୍ରେମରେ ଭଗବାନଙ୍କ ନାମ ଓ ଗୁଣ କୀର୍ତ୍ତନ କରି, ଉନ୍ମତ୍ତ ହୋଇ ନାଚିବାକୁ ଲାଗିଲେ । ପ୍ରେମ ଓ ଆନନ୍ଦବିଭୋର ହୋଇ ସେ ନିଜ ଶରୀରକୁ ମଧ୍ୟ ଭୁଲିଗଲେ ; ସେ ତାଙ୍କର ଦେହଜ୍ଞାନ ହରାଇବସିଲେ । ଆଉ କି ଡେରି ଥାଏ ! ଭଗବାନ୍ ତତ୍‌କ୍ଷଣାତ୍ ଆସି ସେଠାରେ ପ୍ରକଟ ହୋଇଗଲେ ।

ଭଗବାନଙ୍କୁ ଦେଖି ନାରଦ ଅବାକ୍ ହୋଇଗଲେ । ସେ ପଗ୍ଚରିଲେ, ''ଭଗବନ୍ ! ଆପଣ ତ କହିଥିଲେ ଯେ, ଏହିପରି ସାଧନା କରି ଗ୍ଲିଲେ ଏ ଗଛରେ ଯେତିକି ପତ୍ର ଅଛି, ସେତିକି ବର୍ଷ ପରେ ଏହାଙ୍କୁ ଆପଣଙ୍କ ଦର୍ଶନ ମିଳିବ; କିନ୍ତୁ ବର୍ଷେ ତ ଦୂରର କଥା, ଏବେ ତ ମୁହୂର୍ତ୍ତେ ବି ହୋଇନି, ଅଥଚ ଆପଣ ପ୍ରକଟ ହୋଇଗଲେ !'' ଭଗବାନ୍ କହିଲେ, ''ନାରଦ ! ସେ କଥା ଅଲଗା ଏବଂ ଏ କଥା ଅଲଗା । ତୁମେ ଏହାର ରହସ୍ୟ ଜାଣନାହିଁ ବୋଲି ମୁଁ ତୁମକୁ କହିଥିଲି ନା ।'' ନାରଦ କହିଲେ, ''ପ୍ରଭୋ ! ଏହାର ରହସ୍ୟ କ'ଣ, ତାହା ମୋତେ ବୁଝାଇ କହନ୍ତୁ ।'' ଭଗବାନ୍ କହିଲେ, ''ନାରଦ ! ସେ ସମୟରେ ତ ଏହାଙ୍କ ସାଧନାରେ କ୍ରିୟାର ପ୍ରାଧାନ୍ୟ ଥିଲା ; କିନ୍ତୁ ବର୍ତ୍ତମାନ କ୍ରିୟା ସହିତ ଏହାଙ୍କର ଭାବର ବି ପ୍ରାଧାନ୍ୟ ରହିଛି । ସାଧୁପୁରୁଷମାନଙ୍କର ସେବା-ଶୁଶ୍ରୂଷା, ବ୍ରତ, ଉପବାସ, ତପସ୍ୟା, ଗୀତାପାଠ, ସତ୍‌ପୁରୁଷଙ୍କ ସଙ୍ଗ, ସ୍ୱାଧ୍ୟାୟ ଏବଂ ଭଜନ, ଧ୍ୟାନ ଆଦି ସାଧନାସହିତ ମୋତେ ଭକ୍ତି କରିବା ଅତି ଉତ୍ତମ କ୍ରିୟା । କିନ୍ତୁ ସେସବୁ କ୍ରିୟାକଳାପ ସହିତ ଯେପର୍ଯ୍ୟନ୍ତ ଭାବର ପ୍ରାଧାନ୍ୟ ମିଶିନାହିଁ, ସେପର୍ଯ୍ୟନ୍ତ ତାଙ୍କ ପକ୍ଷରେ ମୋର ଦର୍ଶନ ପାଇବାରେ ବିଳମ୍ବ ହେବାଟା ଉଚିତ । ଭକ୍ତ ଯେତେବେଳେ ନିଜକୁ ଭୁଲିଯାଇ, ଅନନ୍ୟ ପ୍ରେମରେ ତନ୍ମୟ ହୋଇ କେବଳ ମୋରି ଭଜନ-କୀର୍ତ୍ତନରେ ହିଁ ନିମଗ୍ନ ହୋଇଯାଆନ୍ତି, ସେତେବେଳେ ମୁଁ କ୍ଷଣେମାତ୍ର ବି ଅଟକି ରହିପାରେ ନାହିଁ । ବର୍ତ୍ତମାନ ଏହାଙ୍କର ଏହି ଯେଉଁ ଅପୂର୍ବ ପବିତ୍ର ପ୍ରେମଭରା ଭାବ ରହିଛି, ସେତେବେଳେ ଏହାଙ୍କର ସମସ୍ତ କ୍ରିୟା ଉତ୍ତମ ହୋଇଥିଲେ ମଧ୍ୟ, ସେଥିରେ ଏପରି ଭାବ ନ ଥିଲା । ତେଣୁ ମୁଁ କହିଥିଲି, ଏହିପରି ସାଧନା କଲେ ସେହି ଗଛରେ ଯେତିକି ପତ୍ର ରହିଛି, ସେତିକି ବର୍ଷ ପରେ ମୋର ଦର୍ଶନ ମିଳିବ ।'' ଏହି ରହସ୍ୟ ଶୁଣି ନାରଦ ମଧ୍ୟ ପ୍ରେମବିହ୍ୱଳ ହୋଇଗଲେ ଏବଂ ଭାବାବେଶରେ ନିଜର ସବୁକିଛି ଭୁଲିଯାଇ ଭଗବାନଙ୍କ ନାମ ଓ ଗୁଣ କୀର୍ତ୍ତନ କରି, ପ୍ରେମୋନ୍ମତ୍ତ ହୋଇ ନୃତ୍ୟ କରିବାକୁ ଲାଗିଲେ ।

ଉଭୟ ଭକ୍ତଙ୍କର ଏହି ପ୍ରେମମୟ ସ୍ଥିତି ଦେଖି ସ୍ୱୟଂ ଭଗବାନ୍ ମଧ୍ୟ ପ୍ରେମମଗ୍ନ ହୋଇଗଲେ । ତାଙ୍କର ମଧ୍ୟ ସେହିପରି ସ୍ଥିତି ହୋଇଗଲା । ଭଗବାନ୍ ତ ନିଜର ପ୍ରତିଜ୍ଞାରେ ଅଟଳ ଯେ,

***ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।***

*(ଗୀତା ୪ ।୧୧)*

—''ଯେଉଁ ଭକ୍ତମାନେ ମୋତେ ଯେଉଁପରି ଭଜନ କରନ୍ତି, ମୁଁ ସେମାନଙ୍କୁ ସେହିପରି ଭଜନ କରେ ।''

ଏହିପରି କିଛି ସମୟ ପର୍ଯ୍ୟନ୍ତ ବିଚିତ୍ର ପ୍ରେମରାଜ୍ୟର ପ୍ରଗାଢ ସ୍ଥିତିରେ ରହିବା ପରେ ସେହି ଭକ୍ତଦ୍ୱୟଙ୍କର ଓ ଭଗବାନଙ୍କର ଯେତେବେଳେ ବାହ୍ୟ ଚେତନା ଫେରିଆସିଲା, ସେତେବେଳେ ସେମାନେ ପ୍ରେମମୁଗ୍ଧ ହୋଇ ପରସ୍ପର କଥାଭାଷା କରିବାକୁ ଲାଗିଲେ । ତା'ପରେ ଭଗବାନ୍ ସେହି ଭକ୍ତଙ୍କ ସହିତ ବିମାନରେ ବସି ପରମଧାମକୁ ଗମନ କଲେ ଏବଂ ନାରଦ ପ୍ରେମବିଭୋର ହୋଇ ଭଗବାନଙ୍କ ନାମ ଓ ଗୁଣ ଗାନ କରି ନିଜ ଗନ୍ତବ୍ୟ ସ୍ଥାନକୁ ପ୍ରସ୍ଥାନ କଲେ ।

ଏହି ପ୍ରସଙ୍ଗରୁ ଆମେ ଶିକ୍ଷା ଗ୍ରହଣ କରିବା ଆବଶ୍ୟକ ଯେ, ସକଳ କ୍ରିୟାକଳାପରେ ଭଗବାନଙ୍କ ଠାରେ ଭକ୍ତି ହିଁ ହେଉଛି ଉତ୍ତମ ଏବଂ ସେହି ଭକ୍ତି ସହିତ ନିଷ୍କାମ ଓ ପ୍ରେମଭାବର ଏକତ୍ର ସମାବେଶ ହୋଇଗଲେ ଭଗବାନଙ୍କର ମିଳନରେ ଆଉ କ୍ଷଣେମାତ୍ର ବିଳମ୍ବ ହେବ ନାହିଁ । ଏଣୁ ଉପରୋକ୍ତଭାବରେ ନିଷ୍କାମ ଓ ଅନନ୍ୟ ପ୍ରେମପୂର୍ବକ ନିରନ୍ତର ନିରବଚ୍ଛିନ୍ନ ଭଜନ-ଧ୍ୟାନ ଆଦି ଉତ୍ତମ କ୍ରିୟା କରିବା ଏକାନ୍ତ ଆବଶ୍ୟକ ।

*ହରି ଓଁ ତତ୍ ସତ୍*

## ୬. ପ୍ରବୀରଙ୍କର* ଅଲୌକିକ ଭଗବତ୍ ପ୍ରେମ

ପ୍ରବୀର ଥିଲେ ମାହିଷ୍ମତୀ ନଗରୀର ନୃପତି ଶ୍ରୀନୀଳଧ୍ୱଜଙ୍କର ପୁତ୍ର । ତାଙ୍କର ମାତା ଜୁହ୍ଲାଦେବୀ ଥିଲେ ବଡ଼ ସରଳା, ସାଧ୍ୱୀ ଓ ଧର୍ମପରାୟଣା । ଭଗବଦ୍‌ଭକ୍ତି ସଙ୍ଗେ ସଙ୍ଗେ ସେ ବଡ଼ ସ୍ୱାଭିମାନିନୀ, ବୀରାଙ୍ଗନା ଓ ଧୈର୍ଯ୍ୟଶୀଳା ମଧ୍ୟ ଥିଲେ। ତାଙ୍କର ଅତ୍ୟନ୍ତ ପବିତ୍ର ଜୀବନର ପ୍ରଭାବ ତାଙ୍କ ପୁତ୍ର ପ୍ରବୀରଙ୍କ ଉପରେ ସଂପୂର୍ଣ୍ଣରୂପେ ପଡ଼ିଥିଲା । ପରିଣାମସ୍ୱରୂପ ପ୍ରବୀରଙ୍କ ଠାରେ ମଧ୍ୟ ସରଳତା, ସୌଜନ୍ୟ, ସତ୍‌ପ୍ରେମ ଓ ଭଗବଦ୍‌ଭକ୍ତି ପୂର୍ଣ୍ଣମାତ୍ରାରେ ରହିଥିଲା । ବୀରତା ତ ତାଙ୍କର ଅଙ୍ଗ-ପ୍ରତ୍ୟଙ୍ଗରୁ ଉଛୁଳି ପଡୁଥିବାର ପରିଲକ୍ଷିତ ହେଉଥିଲା; କିନ୍ତୁ ସେ ନିରନ୍ତର ଭଗବତ୍-ଚିନ୍ତନ ଏବଂ ଭଗବତ୍‌ପ୍ରେମରେ ତନ୍ମୟ ହୋଇ ରହୁଥିଲେ ।

ସେତେବେଳେ ମହାଭାରତ ଯୁଦ୍ଧରେ କୌରବମାନଙ୍କୁ ପରାଜିତ କରି ଧର୍ମରାଜ ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କରୁଥିଲେ । ସେ ଭଗବାନ୍ ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁଯାୟୀ ଗୋଟିଏ ଅଶ୍ୱମେଧ ଯଜ୍ଞ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । ସେଥି ନିମନ୍ତେ ଅଶ୍ୱକୁ ଛାଡ଼ିଦିଆଗଲା । ତାହାକୁ ରକ୍ଷା କରିବା ନିମନ୍ତେ ମହାଧନୁର୍ଦ୍ଧର ଅର୍ଜୁନ ନିୟୋଜିତ ହେଲେ । ତାଙ୍କ ସହିତ ବିଶାଳ ସେନାବାହିନୀ ଚ୍ଛଲିଲେ । ଯାତ୍ରାପୂର୍ବରୁ ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ଅର୍ଜୁନଙ୍କ ସହିତ ଯିବାର ଇଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ''ଏହି ସାମାନ୍ୟ କାର୍ଯ୍ୟ ପାଇଁ ଆପଣଙ୍କୁ କଷ୍ଟ ଦେବା ଉଚିତ ହେବ ନାହିଁ । ସମଗ୍ର ପୃଥିବୀକୁ ଜୟ କରିବାକୁ ତ ମୁଁ ଏବଂ ଏହି ସେନାବାହିନୀ ଯଥେଷ୍ଟ'' – ଏପରି କହି ଅର୍ଜୁନ ତାଙ୍କୁ ନ ନେଇ ଚ୍ଛଲିଗଲେ । ତାଙ୍କର ମୁଖମଣ୍ଡଳରେ ଅଭିମାନର ରେଖା ପ୍ରକାଶ୍ୟଭାବରେ ଖେଳିଯାଉଥିଲା ।

''ବୀରବର ଅର୍ଜୁନଙ୍କ ସହିତ ଯୁଦ୍ଧ କରିବାର ସାହସ ଯାହାଙ୍କର ରହିଛି, ସେ ଏହି ଅଶ୍ୱକୁ ଧରନ୍ତୁ, ଅନ୍ୟଥା ଉପହାର ସହିତ ମହାରାଜ ଯୁଧିଷ୍ଠିରଙ୍କ

---

* ବଙ୍ଗଳାରେ ପ୍ରଚିଳତ ଲୀଳାଭିନୟ(ଯାତ୍ରା)ମାନଙ୍କ ମଧ୍ୟରେ ପ୍ରବୀରଙ୍କ ଲୀଳା ଅଭିନୀତ ହୁଏ । ଏହା ଅତ୍ୟନ୍ତ ସୁନ୍ଦର ଓ ମନମୁଗ୍ଧକର । ଏହି ଆଖ୍ୟାୟିକାଟି ତାହାରି ଉପରେ ଆଧାରିତ । ଏହା କେତେଦୂର ସତ୍ୟ, ତା'ର ଠିକଣା ନାହିଁ । ପ୍ରବୀରଙ୍କ କଥା 'ଜୈମିନୀୟ ଅଶ୍ୱମେଧ'ରେ ମଧ୍ୟ ରହିଛି; କିନ୍ତୁ ତାହା ଅନ୍ୟ ରୂପରେ ରହିଛି ।

ଅଶ୍ୱମେଧ ଯଜ୍ଞରେ ନିର୍ଦ୍ଧାରିତ ସମୟରେ ଉପସ୍ଥିତ ହୁଅନ୍ତୁ ।'' – ଅଶ୍ୱର ମସ୍ତକ ଉପରେ ସ୍ୱର୍ଣ୍ଣପତ୍ରରେ ଏହା ଲିଖିତ ହୋଇଥିଲା । ସମସ୍ତଙ୍କ ଆଗେ ଆଗେ ଅଶ୍ୱଟି ଖୁସିରେ ନାଚି ନାଚି ଚାଲିଥାଏ ଏବଂ ତା' ପଛେ ପଛେ ବୀରବର ଅର୍ଜୁନଙ୍କ ସହିତ ସଶସ୍ତ୍ର ସେନାବାହିନୀ ଚାଲିଥାଆନ୍ତି ।

ସେହି ଅଶ୍ୱ ଆଡ଼କୁ ସାହସ କରି କେହି ସଂପୂର୍ଣ୍ଣରୂପେ ଚାହିଁବାର ମଧ୍ୟ ଦେଖାଯାଉ ନ ଥିଲା । ଯିବାବାଟରେ ଯେତେ ରାଜା-ମହାରାଜାଙ୍କ ସହିତ ଭେଟ ହେଲା, ସମସ୍ତେ ସବୁଠାରେ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ ଏବଂ ଯୁଧିଷ୍ଠିର ମହାରାଜଙ୍କ ଅଧୀନତା ସ୍ୱୀକାର କଲେ । ଏପରିଭାବରେ ସେହି ଅଶ୍ୱ ଯାଇ ମାହିଷ୍ମତୀ ନଗରୀ ନିକଟରେ ପହଞ୍ଚିଲା ।

ପ୍ରବୀରଙ୍କ ପିତା ମାହିଷ୍ମତୀନରେଶ ନୀଳଧ୍ୱଜ ଅର୍ଜୁନଙ୍କ ନାମ ଶୁଣିବାକ୍ଷଣି ଭୟଭୀତ ହୋଇଗଲେ । ସେ ଜାଣିଗଲେ, ଅଶ୍ୱକୁ ନ ଧରିବା ହିଁ ତାଙ୍କ ପକ୍ଷରେ ମଙ୍ଗଳକର ହେବ । କିନ୍ତୁ ବୀରାଙ୍ଗନା ଜ୍ୱାଳାଦେବୀ ଏହି ସମ୍ବାଦ ପାଇ କ୍ଷୁବ୍ଧ ହୋଇଗଲେ । ସେ ନିଜ ସ୍ୱାମୀଙ୍କର ଏଭଳି କାର୍ଯ୍ୟକୁ କାପୁରୁଷତା, ଭୀରୁତା ବୋଲି ବିଚାର କରି ନିଜ କ୍ଷତ୍ରିୟତ୍ୱର ପ୍ରତିଷ୍ଠା ଓ ଗୌରବ ରକ୍ଷା କରିବାକୁ ଅର୍ଜୁନଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ପ୍ରସ୍ତୁତ ହେବାକୁ ଚେଷ୍ଟା କଲେ; କିନ୍ତୁ ନୀଳଧ୍ୱଜ ନିଜ ନିଷ୍ପତ୍ତିରେ ଅଟଳ ରହିଲେ ।

ପତିଙ୍କ ନିଷ୍ପତ୍ତିରେ ନିରାଶ ହୋଇ ଜ୍ୱାଳାଦେବୀ ନିଜର ପ୍ରାଣସମ ପ୍ରିୟ ପୁତ୍ର ଭକ୍ତ ପ୍ରବୀରଙ୍କ ନିକଟକୁ ଚାଲିଗଲେ ଏବଂ କ୍ଷତ୍ରିୟର ପ୍ରତିଷ୍ଠା ରକ୍ଷା ନିମନ୍ତେ ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ତାଙ୍କୁ ପ୍ରୋତ୍ସାହିତ କରି କହିଲେ, ''ପୁତ୍ର ! ମୁଁ ତୁମକୁ ନିଜ ପ୍ରାଣ ଅପେକ୍ଷା ଅଧିକ ଭଲପାଏ; ତା ସଙ୍ଗେ ସଙ୍ଗେ ତୁମଠାରୁ ଦେଶ, ଜାତି ଓ ସ୍ୱାଭିମାନ-ରକ୍ଷାର ଆଶା ମଧ୍ୟ କରେ । ଅର୍ଜୁନଙ୍କର ବିଶାଳ ସେନାବାହିନୀ ଅଶ୍ୱମେଧ ଯଜ୍ଞର ଅଶ୍ୱ ସହିତ ତୁମର କ୍ଷତ୍ରିୟତ୍ୱକୁ, ତୁମ ବୀରତ୍ୱକୁ, ତୁମ ସ୍ୱତନ୍ତ୍ରତା ଏବଂ ତୁମର ସ୍ୱଦେଶପ୍ରୀତିକୁ ରଣହୁଙ୍କାର ଦେଉଛି; ଯୁଦ୍ଧ ପାଇଁ ଆହ୍ୱାନ କରୁଛି । କିନ୍ତୁ ମୁଁ ଚାହୁଁଛି, ତାଙ୍କୁ ଏଠାରୁ ବିଜୟ ଉଲ୍ଲାସରେ ଉନ୍ମତ୍ତ ହୋଇ ଆଗେଇଯିବାକୁ ଦିଆ ନ ଯାଉ । ତୁମେ ଉଠ; ଶୀଘ୍ର ଉଠ; କ୍ଷିପ୍ର ହୁଅ; ଜାଗ୍ରତ ହୁଅ । ଅଶ୍ୱମେଧ ଯଜ୍ଞର ଅଶ୍ୱକୁ ଧରିଆଣି, ଅର୍ଜୁନଙ୍କୁ ପଛଘୁଞ୍ଚା ଦେଇ ଫେରିଯିବାକୁ ବାଧ୍ୟ କରିଦିଅ । ତାଙ୍କର ମଦୋନ୍ମତ୍ତ ଚତୁରଙ୍ଗ ସେନାକୁ ନିଜର ସୁତୀକ୍ଷ୍ଣ ଶରରେ ବିଦ୍ଧ କରି କ୍ଷଣକ ପାଇଁ ବି ଏଠାରେ ତିଷ୍ଠି ରହିବାକୁ ଦିଅ ନାହିଁ ।''

''ମାଆ ! ଶ୍ରୀକୃଷ୍ଣ ଯାହାଙ୍କର ସାରଥି, ସେହି ବୀରବର ଅର୍ଜୁନ ! . . .''

ପ୍ରବୀର ବିସ୍ମିତ ହୋଇ ଆଉ କିଛି କହିପାରିଲେ ନାହିଁ । ତେଣୁ ତାଙ୍କ ସ୍ନେହମୟୀ ଜନନୀ ଦୁର୍ଗାଙ୍କ ପରି ହୁଙ୍କାର କରି କହିଲେ, ‘‘ହଁ, ସେହି ଅର୍ଜୁନ । ଯଦି ତୋର କିଛି କହିବାକୁ ଥାଏ, ତେବେ ଖୁବ୍ ଶୀଘ୍ର ସ୍ପଷ୍ଟଭାବରେ କହିଦେ; ମୁଁ ନିଜେ ଯୁଦ୍ଧ କରିବା ପାଇଁ ଅର୍ଜୁନଙ୍କ ବିଶାଳ ସେନାର ସମ୍ମୁଖୀନ ହେବି । ମୁଁ ଜାଣିବି ଯେ, ମୁଁ କୌଣସି ପୁତ୍ରକୁ ଜନ୍ମ ଦେଇନାହିଁ ।’’

‘‘ଆଜ୍ଞା ଶିରୋଧାର୍ଯ୍ୟ ମାତା ! ତୁମେ ନିଶ୍ଚିନ୍ତ ହୋଇ ଅନ୍ତଃପୁରକୁ ଫେରିଯାଅ ।’’ —ପ୍ରବୀରଙ୍କ ଠାରୁ ଏକଥା ଶୁଣି ସନ୍ତୁଷ୍ଟ ହୋଇ ମାତା ଅନ୍ତଃପୁରକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ପ୍ରବୀର ଅର୍ଜୁନଙ୍କ ନିକଟକୁ ଚିଠି ଲେଖି ପଠାଇଲେ, ‘‘ମୁଁ ଆପଣଙ୍କର ଅଶ୍ୱକୁ ଧରିନେଇ ତାର ଗତିରୋଧ କରୁଛି । ଆପଣ ରଣକ୍ଷେତ୍ରକୁ ଆସିଯାଆନ୍ତୁ ।’’

ଦୂତ ଉତ୍ତର ଘେନି ଫେରିଲା । ବୀର ପ୍ରବୀର ପଢ଼ିଲେ, ‘‘ବୀର ! କ୍ଷତ୍ରିୟୋଚିତ ପତ୍ର ପାଠ କରି ମୁଁ ବିଶେଷ ଖୁସୀ ହେଲି; ଏଥି ନିମନ୍ତେ ଅତ୍ୟନ୍ତ ପ୍ରସନ୍ନତାପୂର୍ବକ ମୁଁ ତୁମକୁ ଧନ୍ୟବାଦ ଅର୍ପଣ କରୁଛି । କିନ୍ତୁ ତୁମେ ବର୍ତ୍ତମାନ ଛୋଟ ପିଲା । ଜୀବନର ଆନନ୍ଦ ଛାଡ଼ିଦେଇ ମୃତ୍ୟୁମୁଖରେ ପଡ଼ିବାକୁ ଜିଦ୍ ଧରିବା ଭଲ ନୁହେଁ ।’’ ପ୍ରବୀର ତୁରନ୍ତ ପତ୍ର ଲେଖିଲେ, ‘‘ବୀରବର ! କାପୁରୁଷତାପୂର୍ଣ୍ଣ ବାଣୀ ଆପଣଙ୍କ ପକ୍ଷରେ ଶୋଭା ପାଏ ନାହିଁ । ଯଦି ଯୁଦ୍ଧ କରିବାର ଇଚ୍ଛା ନ ଥାଏ, ତେବେ ଆପଣ ଇନ୍ଦ୍ରପ୍ରସ୍ଥ ଫେରିଯାଇ ପାରନ୍ତି । ମୁଁ ଅଶ୍ୱକୁ ଛାଡ଼ିଦେଇ ପାରିବି ନାହିଁ ।’’

ଆଉ କେଉଁ କଥା ବା ବାକି ରହିଲା ! ପରଦିନ ଅରୁଣୋଦୟ ହେବା ସଙ୍ଗେ ସଙ୍ଗେ ଯୁଦ୍ଧ ଆରମ୍ଭ ହୋଇଗଲା । ଭୀଷଣ ଯୁଦ୍ଧ ହେଲା । ଭକ୍ତ ଶିରୋମଣି ବୀର ପ୍ରବୀରଙ୍କର ତୀକ୍ଷ୍ଣଶରାଘାତରେ ଅର୍ଜୁନ ବ୍ୟାକୁଳ ହୋଇପଡ଼ିଲେ । ସେ ପ୍ରଦ୍ୟୁମ୍ନଙ୍କୁ କହିଲେ, ‘‘ପ୍ରବୀରଙ୍କୁ ସାମାନ୍ୟ ସୁକୁମାର ବାଳକ ବୋଲି ନ ଭାବି ଶରବର୍ଷଣ କର ।’’ କିନ୍ତୁ ପ୍ରଦ୍ୟୁମ୍ନ କହିଲେ, ‘‘ଆପଣ ଯେପରି ମୋ ପିତାଙ୍କର ପ୍ରିୟ, ବୀର ପ୍ରବୀର ମଧ୍ୟ ସେହିପରି ମୋ ପିତାଙ୍କର ପ୍ରିୟ ଭକ୍ତ । ତେଣୁ ତାଙ୍କ ଭକ୍ତି ବିଷୟ ମନେପଡ଼ିବାରୁ ମୋର ହାତ ଉଠୁନାହିଁ; ମୁଁ ପୂର୍ଣ୍ଣପ୍ରାଣରେ ଯୁଦ୍ଧ କରିପାରୁନାହିଁ ।’’ ଏହାପରେ ମହାବଳୀ ଭୀମସେନ ସମ୍ମୁଖ ଯୁଦ୍ଧକୁ ଆସିଗଲେ; କିନ୍ତୁ ଭଗବତ୍-ଚରଣାଶ୍ରିତ, ଭଗବାନଙ୍କ ବଳରେ ବଳୀୟାନ, ଭଗବାନଙ୍କ ଶକ୍ତିରେ ଶକ୍ତିମାନ୍ ମହାବୀର ପ୍ରବୀରଙ୍କ ତୀକ୍ଷ୍ଣଶର ଆଗରେ ତାଙ୍କର କୌଣସି ଶକ୍ତି କାମ କଲାନି । ସେ ସେହି ମର୍ମଭେଦୀ ଶରାଘାତର ସମ୍ମୁଖୀନ ହୋଇପାରିଲେ ନାହିଁ । ଭୀମସେନଙ୍କର ଏପରି ଦୁରବସ୍ଥା ଦେଖି, ଅର୍ଜୁନ କ୍ରୋଧରେ ଜର୍ଜରିତ ହୋଇ

ଆଗ୍ନେୟାସ୍ତ୍ର ପ୍ରୟୋଗ କଲେ; କିନ୍ତୁ ପ୍ରବୀରଙ୍କର ବାରୁଣାସ୍ତ୍ରର ବାରିଧାରା ସମ୍ମୁଖରେ ସେହି ଅଗ୍ନିର ଭୀଷଣ ଜ୍ୱାଳା ଶାନ୍ତଶୀତଳ ହୋଇଗଲା । ଏପରିଭାବରେ ପ୍ରବୀରଙ୍କ ଶିରଚ୍ଛେଦ ନିମନ୍ତେ ଅର୍ଜୁନ ଯେତେ ଭୟଙ୍କର ଏବଂ ବିଷାକ୍ତ ଶର ପ୍ରୟୋଗ କଲେ, ସେସବୁ ଶର ବ୍ୟର୍ଥ ହୋଇଗଲା । ରାଜକୁମାର ପ୍ରବୀର ଅର୍ଜୁନଙ୍କ ସହିତ ତାଙ୍କର ବିପୁଳ ସେନାଙ୍କୁ ଅସ୍ତବ୍ୟସ୍ତ ଏବଂ ପରାସ୍ତ କରିଦେଲେ ।

ଅର୍ଜ୍ଜୁନଙ୍କ ବୀରତ୍ୱଦୀପ୍ତ ମୁଖମଣ୍ଡଳରେ ବିଷାଦର କାଳିମା ଛାଇ ହୋଇଗଲା । ସେତିକିବେଳେ ପ୍ରବୀର କହିଲେ, "ବୀରବର ଅର୍ଜୁନ ! ଅଶ୍ୱମେଧ ଯଜ୍ଞ-ଅଶ୍ୱକୁ ଏହି ବଳର ଭରସାରେ ଆପଣ ମୁକ୍ତଭାବରେ ବିଚରଣ କରିବାକୁ ଛାଡ଼ିଦେଇଥିଲେ ନା ! – ମୁଁ ଆପଣଙ୍କୁ ସ୍ପଷ୍ଟଭାବରେ ସୂଚାଇଦେଉଛି ଯେ, ଯଦି ଆପଣଙ୍କୁ ନିଜର ପ୍ରାଣ ପ୍ରିୟ ବୋଧ ହେଉ ନ ଥାଏ, ତେବେ ଆପଣ ଆସନ୍ତାକାଲି ପୁଣି ଥରେ ଯୁଦ୍ଧଭୂମିକୁ ଆସିଯାଆନ୍ତୁ, ନତୁବା ବର୍ତ୍ତମାନ ଆରାମରେ ଫେରିଯାଆନ୍ତୁ ଏବଂ ଯେଉଁଦିନ ଏହି ଅଶ୍ୱକୁ ନେଇ ମୁଁ ଅଶ୍ୱମେଧ ଯଜ୍ଞ କରିବି, ସେହିଦିନ ଉପହାର ଧରି ଏଠାରେ ଆସି ପହଞ୍ଚନ୍ତୁ । ଯଦି ମନରେ ମୋତେ ଜିଣିବାକୁ ଆକାଙ୍କ୍ଷା ଥାଏ, ତେବେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଡକାନ୍ତୁ, ତାଙ୍କ ଦର୍ଶନ ଲାଭ କରି ମୁଁ ବି କୃତକୃତ୍ୟ ହୋଇଯିବି ।" ଏହା କହି ପ୍ରବୀର କିଛି ସମୟ ପର୍ଯ୍ୟନ୍ତ ଭଗବାନଙ୍କ ଧ୍ୟାନରେ ତନ୍ମୟ ହୋଇଗଲେ ।

କିନ୍ତୁ ପ୍ରବୀରଙ୍କର ଏତାଦୃଶ ବାଣୀ ଅର୍ଜୁନଙ୍କର ହୃଦୟରେ ତୀରତୁଲ୍ୟ ପ୍ରବେଶ କରି ତାଙ୍କୁ ମର୍ମାହତ କରିଦେଲା । ଭଗବାନଙ୍କ ସମ୍ମୁଖରେ ଅଭିମାନଭରା ବାଣୀ କହି ବିରାଟ ଭୁଲ୍ କରିଥିବା କଥା ବର୍ତ୍ତମାନ ସେ ପ୍ରତ୍ୟକ୍ଷ ବୁଝିପାରିଲେ । ତତ୍‌କ୍ଷଣାତ୍ ଆକୁଳ ହୃଦୟରେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବାକୁ ଲାଗିଲେ, "ହେ ହରି ! ହେ ଗୋବିନ୍ଦ !! ହେ ବାସୁଦେବ !! ହେ ନାରାୟଣ !! ମୋର ଅନୁଚିତ ବାଣୀ ନିମନ୍ତେ ମୋତେ କ୍ଷମା କରନ୍ତୁ । ଆପଣ ସର୍ବଜ୍ଞ, ସର୍ବଶକ୍ତିମାନ ଓ ସର୍ବେଶ୍ୱର । ଆପଣ ଶୀଘ୍ର ଆସି ମୋତେ ରକ୍ଷା କରନ୍ତୁ ।" ଅର୍ଜୁନଙ୍କର ଡାକ ଶୁଣିବାକ୍ଷଣି ଭକ୍ତଭୟଭଞ୍ଜନ ଭଗବାନ୍ ତୁରନ୍ତ ସେଠାରେ ପ୍ରକଟ ହୋଇଗଲେ । ମନେହେଲା, ସତେ ଯେପରି ସେ ଏପର୍ଯ୍ୟନ୍ତ ସେଇଠି କେଉଁଠି ଲୁଚିରହିଥିଲେ ।

ଭଗବାନଙ୍କୁ ଦେଖିବାମାତ୍ରେ ଅର୍ଜୁନ ତାଙ୍କ ପାଦତଳେ ଲୋଟିଗଲେ । ପ୍ରଭୁ ଚାହିଁଦିଅନ୍ତି ତ, ଦେଖିଲେ, ପ୍ରବୀର ମଧ୍ୟ ପ୍ରଭୁଙ୍କର ପବିତ୍ର ପାଦତଳେ ଲୋଟିଯାଇ ପ୍ରଣିପାତ କରୁଛନ୍ତି । ଭଗବାନ୍ ଅର୍ଜୁନ ଓ ପ୍ରବୀର ଉଭୟଙ୍କୁ ଦର୍ଶନ ଦେଲେ । ପ୍ରବୀର ଗଦ୍‌ଗଦ ହୋଇଯାଉଥା'ନ୍ତି । ଆନନ୍ଦାତିଶଯ୍ୟରେ ସେ କହିବାକୁ ଲାଗିଲେ, "ପ୍ରଭୋ ! ଆପଣଙ୍କର ମଙ୍ଗଳ ଦର୍ଶନ ଲାଭ କରି ମୁଁ ଆଜି ଧନ୍ୟ

ହୋଇଗଲି । ମୋର ଜୀବନ କୃତକୃତ୍ୟ ହୋଇଗଲା ।'' ସେ ପୁଣି ଅର୍ଜୁନଙ୍କୁ କହିଲେ, ''ପାର୍ଥ ! ମୁଁ ଆପଣଙ୍କ ନିକଟରେ ଚିରକୃତଜ୍ଞ ଓ ଚିରଋଣୀ । ଆପଣଙ୍କ କୃପାରୁ ହିଁ ମୋର ଆଜି ନବୀନ ମେଘସମାନ ଶ୍ୟାମଳ ଆଭାଯୁକ୍ତ ନୀଳବର୍ଣ୍ଣ ଶ୍ୟାମସୁନ୍ଦରଙ୍କର ତ୍ରୈଲୋକ୍ୟପାବନ ମଧୁର ମନୋହର ଲାବଣ୍ୟମୟ ମୂର୍ତ୍ତି ଦର୍ଶନ କରିବାର ପରମ ସୌଭାଗ୍ୟ ଲାଭ ହେଲା । ବର୍ତ୍ତମାନ ଆମେ ନିଜ ନିଜ ଶିବିରକୁ ଫେରିଯିବା । କାଲି ଭଗବାନଙ୍କ ସମ୍ମୁଖରେ ହିଁ ଯୁଦ୍ଧ ହେବ ।'' ତା'ପରେ ଦୁହେଁ ନିଜ ନିଜ ଶିବିରକୁ ଚାଲିଗଲେ ।

ପ୍ରବୀରଙ୍କୁ ଦେଖିବାକ୍ଷଣି ଜୁହ୍ନାଦେବୀ ତାଙ୍କୁ କୋଳାଗ୍ରତ କରି କହିଲେ, ''ବତ୍ସ ! ତୁମ ବିଜୟଲାଭ ନିମନ୍ତେ ମୁଁ ଭଗବତୀ ଭାଗୀରଥୀଙ୍କୁ ଆରାଧନା କରିବାକୁ ଯାଉଛି ।'' ପ୍ରବୀରଙ୍କର ବୀରହୃଦୟା ଧର୍ମପ୍ରାଣା ପତିବ୍ରତା ପତ୍ନୀ ମଦନମଞ୍ଜରୀ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, ''ଭଗବାନ୍ ଶ୍ରୀକୃଷ୍ଣଙ୍କୁ ନିଜ ଭକ୍ତିରେ ପ୍ରସନ୍ନ କରି ମୁଁ ମଧ୍ୟ ଆପଣଙ୍କ ବିଜୟଲାଭ ନିମନ୍ତେ ତାଙ୍କ ନିକଟରେ ପ୍ରାର୍ଥନା କରିବି ।'' ପ୍ରବୀର ମଧ୍ୟ ଭଗବାନଙ୍କ ଧ୍ୟାନରେ ତଲ୍ଲୀନ ଥିଲେ ।

ଅର୍ଦ୍ଧରାତ୍ରି ! ପ୍ରବୀରଙ୍କ ପତ୍ନୀ ମଦନମଞ୍ଜରୀ ଅର୍ଜୁନଙ୍କ ସୁଷୁପ୍ତ ସେନାରେ ପ୍ରବେଶ କଲେ । ତାଙ୍କ ହସ୍ତରେ ଥାଏ ଏକ ଦୀର୍ଘ କୋଷୋନ୍ମୁକ୍ତ ତରବାରି । ପ୍ରହରୀଙ୍କ ସ୍ଥାନରେ ଥାଆନ୍ତି ତ୍ରିଶୂଳହସ୍ତରେ ଦଣ୍ଡାୟମାନ ଭଗବାନ୍ ଶଙ୍କର । ସେ ମଦନମଞ୍ଜରୀଙ୍କର ପରିଚୟ ଏବଂ ଏ ନିଶୀଥ ସମୟରେ ଉନ୍ମୁକ୍ତ ତରବାରି ଧରି ଶିବିରକୁ ଆସିବାର କାରଣ ପଚାରିଲେ ।

ମଦନମଞ୍ଜରୀ ନିଃସଙ୍କୋଚ ହୋଇ ସତ୍ୟ ପ୍ରକାଶ କରି କହିଲେ, ''ମୁଁ ହେଉଛି ରାଜକୁମାର ପ୍ରବୀରଙ୍କର ପତ୍ନୀ । ନିଜ ପତିଙ୍କ ପ୍ରାଣରକ୍ଷା ନିମନ୍ତେ ଭଗବାନ୍ ଶ୍ରୀକୃଷ୍ଣଙ୍କ ନିକଟକୁ ଯିବାକୁ ଚାହୁଁଛି ।''

ଭଗବାନ୍ ଶଙ୍କର କହିଲେ, ''ଏହା ସମ୍ଭବ ନୁହେଁ । ଭଗବାନ୍ ଏବେ ଶୟନକକ୍ଷରେ । ତୁମେ ଫେରିଯାଅ ।''

''ଯଦି ଏପରି କଥା, ତେବେ ଆପଣଙ୍କ ଶ୍ରୀଚରଣତଳେ ଏହି ମସ୍ତକ ଏହିକ୍ଷଣି ଲୋଟିଯିବ ।''– ଏହା କହି ମଦନମଞ୍ଜରୀ ସଙ୍ଗେ ସଙ୍ଗେ ତରବାରି ଉତ୍ତୋଳନ କଲେ ।

ଭଗବାନ୍ ଶଙ୍କର ନିଜ ପରିଚୟ ପ୍ରଦାନ କରି କହିଲେ, ''ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇ କୈଳାସକୁ ଚାଲିଯାଉଛି । ଏଠାରୁ ଚାଲିଯିବା ପରେ ମୋର ଆଉ କିଛି ଦାୟିତ୍ୱ ନାହିଁ ।''

ମଦନମଞ୍ଜରୀ ଶ୍ରୀକୃଷ୍ଣଙ୍କ ଦ୍ୱାର ନିକଟରେ ପହଞ୍ଚନ୍ତି ତ, ଦ୍ୱାରପାଳ ଧମକ

ଦେଇ ସେଠାରେ ଉପସ୍ଥିତ ହେବାର କାରଣ ପଗ୍ଚରିଲେ । ମଦନମଞ୍ଜରୀ ବିନୀତଭାବରେ ଦ୍ୱାରପାଳଙ୍କୁ ଉତ୍ତର ଦେଲେ, "ନିଜର ପ୍ରାଣନାଥଙ୍କ ପ୍ରାଣ ଭିକ୍ଷା କରିବା ନିମନ୍ତେ ମୁଁ ମହାରାଜ ନୀଳଧ୍ୱଜଙ୍କର ପୁତ୍ରବଧୂ ଭଗବାନ୍ ଶ୍ରୀକୃଷ୍ଣଙ୍କର ଶ୍ରୀଚରଣ ନିକଟକୁ ଯିବାକୁ ଗ୍ଚହୁଁଛି ।"

ଦ୍ୱାରପାଳ କହିଲେ, "ଏଠାରୁ ଫେରିଯାଅ । ପ୍ରଭୁ ବର୍ତ୍ତମାନ ଶୟନରତ ।"

ମଦନମଞ୍ଜରୀ ତରବାରି ଉତ୍ତୋଳନ କରି କହିଲେ, "ଯଦି ଆପଣ ମୋତେ ଭଗବାନଙ୍କ ପାଖକୁ ଯିବାକୁ ଛାଡ଼ି ନ ଦିଅନ୍ତି, ତେବେ ମୁଁ ଏହିକ୍ଷଣି ନିଜ ମସ୍ତକ ଛେଦନ କରି ଆପଣଙ୍କ ପାଦତଳେ ସମର୍ପି ଦେଉଛି ।"

ଦ୍ୱାରପାଳ ମଦନମଞ୍ଜରୀଙ୍କ ହାତ ଧରି ପକାଇଲେ, କିନ୍ତୁ ମଦନମଞ୍ଜରୀ ଦେଖିବାକୁ ପାଇଲେ ଯେ, ସେ ହେଉଛନ୍ତି ସେହି ତ୍ରୈଲୋକ୍ୟନାଥ ମଦନମୋହନ ଶ୍ୟାମସୁନ୍ଦର ଭଗବାନ୍ ଶ୍ରୀକୃଷ୍ଣ, ଯାହାଙ୍କ ଦର୍ଶନ ଲାଗି ସେ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ଆସିଛନ୍ତି । ସେ ପ୍ରଭୁଙ୍କ ଶ୍ରୀପୟରରେ ଲୋଟିଗଲେ । କିଛି ସମୟ ପରେ ସେ କହିଲେ, "ପ୍ରଭୋ ! ଆପଣ ତ ଅନ୍ତର୍ଯ୍ୟାମୀ, କିନ୍ତୁ ମୁଁ ନ କହି ରହିପାରୁନାହିଁ । କାଲି ସକାଳେ ହିଁ ଧନୁର୍ଦ୍ଧର ଅର୍ଜୁନଙ୍କ ସହିତ ମୋର ପତିଙ୍କର ଯୁଦ୍ଧ ହେବ । ଧନୁର୍ଦ୍ଧର ଅର୍ଜୁନ ତ ଆପଣଙ୍କ ସହାୟତା ପାଇସାରିଛନ୍ତି ଏବଂ ଆପଣଙ୍କ ସାହାଯ୍ୟ ଲାଭ କରି ସେ ଯାହା ଇଚ୍ଛା, ତାହା କରିପାରିବେ । ତେଣୁ ମୁଁ ଆପଣଙ୍କ ଠାରୁ ନିଜର ଜୀବନଧନ ପ୍ରାଣପ୍ରିୟ ପତିଙ୍କର ପ୍ରାଣଭିକ୍ଷା କରୁଛି ।"

ନିଜର କୌମୋଦକୀ ଗଦା ଓ ସୁଦର୍ଶନଚକ୍ର ତାଙ୍କ ହାତରେ ଦେଇ ଭକ୍ତବତ୍ସଳ କରୁଣାମୟ ଭଗବାନ୍ କହିଲେ, "ଯେପର୍ଯ୍ୟନ୍ତ ପ୍ରବୀର ଏ ଅସ୍ତ୍ରକୁ ନିଜ ପାଖରେ ରଖିଥିବେ, ଯୁଦ୍ଧରେ ତାଙ୍କୁ କେହି ନିହତ କରିପାରିବେ ନାହିଁ ।" ମଦନମଞ୍ଜରୀ ଭଗବାନଙ୍କ ଶ୍ରୀଚରଣରେ ସଭକ୍ତି ପ୍ରଣାମ କରି ଦ୍ରୁତଗତିରେ ସେଠାରୁ ଫେରିଗଲେ ଏବଂ ଉଭୟ ଆୟୁଧ ନେଇ ନିଜ ପତିଙ୍କୁ ଦେଇଦେଲେ । ଭଗବାନ୍ କହିଥିବା ତଥ୍ୟ ମଧ୍ୟ ସୂଗ୍ଚଇଦେଲେ ।

ସେଆଡ଼େ ଧର୍ମପରାୟଣା ଜୁହ୍ନାଦେବୀ ଶ୍ରୀଗଙ୍ଗାଙ୍କୁ ସନ୍ତୁଷ୍ଟ କରି ଭଗବାନ୍ ଶିବଙ୍କ ନିକଟରେ ପ୍ରାର୍ଥନା କଲେ ଯେ, ସେ ନିଜେ ତ୍ରିଶୂଳ ଧରି ପ୍ରବୀରଙ୍କ ପକ୍ଷରୁ ଯୁଦ୍ଧ କରନ୍ତୁ । ଗଙ୍ଗାଙ୍କର ଏଭଳି ପ୍ରାର୍ଥନା ଶୁଣିବାକ୍ଷଣି ଭଗବାନ୍ ଆଶୁତୋଷ କହିଲେ, 'ଅର୍ଜୁନଙ୍କ ସହିତ ଶ୍ରୀକୃଷ୍ଣ ରହିଥିବାରୁ, ତାଙ୍କ ସମକ୍ଷରେ ରଣଭୂମିରେ ଅବତରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।"

ସକାଳ ହେବାକ୍ଷଣି ଅର୍ଜୁନ ନିଜ ସଖା ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇ ଦେଖନ୍ତି ତ, ସେ ବଡ଼ ଉଦାସ ଓ ଚିନ୍ତାମଗ୍ନ ହୋଇ, ତଳକୁ ମୁହଁ କରି

ବସିଛନ୍ତି । ଅର୍ଜୁନଙ୍କୁ ଦେଖିବାମାତ୍ରେ ସେ କହିବାକୁ ଲାଗିଲେ, "ସଖା ! ପ୍ରବୀର-ପତ୍ନୀର ଭକ୍ତିରେ ସନ୍ତୁଷ୍ଟ ହୋଇ ମୁଁ ନିଜର ଦୁଇଟି ଆୟୁଧ ତାଙ୍କୁ ଦେଇ ଦେଇଛି ଏବଂ ସେହି ଆୟୁଧଦ୍ୱୟ ତାଙ୍କ ପାଖରେ ଥିବା ପର୍ଯ୍ୟନ୍ତ, ତୁମେ ତାଙ୍କର କୌଣସି ଅନିଷ୍ଟ କରିପାରିବ ନାହିଁ । ମୋ ଉପସ୍ଥିତି ଦ୍ୱାରା ସବୁବେଳେ ତୁମର କଲ୍ୟାଣ ବାଧାପ୍ରାପ୍ତ ହେଉଛି ।"

ଭଗବାନଙ୍କ ବାଣୀ ଶୁଣିବାମାତ୍ରେ ଭୀମସେନ କ୍ରୁଦ୍ଧ ହୋଇଉଠିଲେ । ସେ କହିଲେ, "କି ଆଶ୍ଚର୍ଯ୍ୟ କଥା ! ଆପଣଙ୍କୁ ଭାବିଚିନ୍ତି, ବୁଝିବିଚାରି ବର ଦେବାର ଥିଲା । ଆପଣ ଆମକୁ ରକ୍ଷା କରିବାକୁ ଆସିଛନ୍ତି, ନା ଆମ ମୁଣ୍ଡ ଉପରେ ଆହୁରି ବିପତ୍ତି ଲଦିଦେବାକୁ ଆସିଛନ୍ତି ?" କିନ୍ତୁ ଖୁବ୍ ଅନୁନୟ ବିନୟ କରି, ଭୀମଙ୍କୁ ଶାନ୍ତ କରାଇ ଅର୍ଜୁନ ସରଳବିଶ୍ୱାସପୂର୍ବକ ଭଗବାନଙ୍କୁ ବିନମ୍ରଭାବରେ କହିଲେ, "ଏ କ'ଣ କହୁଛନ୍ତି ପ୍ରଭୋ ! ଆପଣଙ୍କର ପ୍ରତ୍ୟେକ କାର୍ଯ୍ୟରେ ଯେ ପ୍ରଚ୍ଛନ୍ନଭାବରେ ମଙ୍ଗଳ ରହିଛି, ସେଥିରେ ମୋର ଅଟଳ ବିଶ୍ୱାସ ରହିଛି । ଆପଣଙ୍କର ଏହି ଆୟୁଧପ୍ରଦାନ ମଧ୍ୟ ମୋର ହିତସାଧନ ପାଇଁ ନିଶ୍ଚୟ ଉଦ୍ଦିଷ୍ଟ; ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ମୁଁ ବର୍ତ୍ତମାନ ସଂପୂର୍ଣ୍ଣ ନିଶ୍ଚିନ୍ତ । ଆପଣ ମୋର ସର୍ବସ୍ୱ । ଆପଣ ହିଁ ଏହି ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନର ପ୍ରେରଣା ଏବଂ ଏହାର ନିର୍ବିଘ୍ନରେ ସମାପନର ବଚନ ପ୍ରଦାନ କରିଛନ୍ତି । ଆପଣ ଯାହା ଉଚିତ ମଣୁଛନ୍ତି, ତାହା କରନ୍ତୁ ।"

ଭଗବାନ୍ ଶ୍ରୀକୃଷ୍ଣ ନିରବ ଥାଆନ୍ତି । ତାଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରିଥିବା ଅର୍ଜୁନଙ୍କର ସୁରକ୍ଷାର ଚିନ୍ତା ତାଙ୍କୁ ଘାରିଥାଏ । ତାଙ୍କ ପାଟିରୁ କଥା ବାହାରୁ ନ ଥାଏ । ଅର୍ଜୁନ ପୁଣି ଥରେ କହିଲେ, "ପ୍ରଭୋ ! ସକାଳ ଆଗତ-ପ୍ରାୟ । ଯୁଦ୍ଧବେଳ ଆସିଯାଉଛି । ବର୍ତ୍ତମାନ ଆପଣଙ୍କର କି ଆଦେଶ ?"

ଭଗବାନ୍ କହିଲେ- 'ଆସ, ଶିବଙ୍କ ନିକଟକୁ ଯିବା । ସେ ହୁଏତ ଭାବିଚିନ୍ତି କୌଣସି ଉପାୟ କହିପାରନ୍ତି ।" ସେତୁହେଁ ଭଗବାନ୍ ଶଙ୍କରଙ୍କ ନିକଟକୁ ଗଲେ । ସେଠାରେ ପହଞ୍ଚି ଶ୍ରୀକୃଷ୍ଣ କହିଲେ, "ଭଗବାନ୍ ! ପ୍ରବୀରପତ୍ନୀଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇ ମୁଁ ନିଜ କୌମୋଦକୀ ଗଦା ଓ ସୁଦର୍ଶନ ଚକ୍ର ମଧ୍ୟ ତାଙ୍କ ସ୍ୱାମୀଙ୍କର ସୁରକ୍ଷା ପାଇଁ ଦେଇ ଦେଇଛି । ପ୍ରବୀରଙ୍କ ପାଖରେ ସେହି ଆୟୁଧ ଯେପର୍ଯ୍ୟନ୍ତ ଥିବ, ଯୁଦ୍ଧରେ ତାଙ୍କୁ କେହି ନିହତ କରିପାରିବେ ନାହିଁ । ବର୍ତ୍ତମାନ ଅର୍ଜୁନ କିପରି ବିଜୟ ଲାଭ କରିବେ, ତାହାର ଉପାୟ ଜାଣିବାକୁ ଆମେ ଦୁହେଁ ଆପଣଙ୍କ ସେବାରେ ଉପସ୍ଥିତ ହୋଇଛୁ ।"

ଭଗବାନ୍ ଶଙ୍କର କହିଲେ, "ସର୍ବଜ୍ଞ ହୋଇ ମଧ୍ୟ ଆପଣ ତାଙ୍କୁ କିପରି

ବର ପ୍ରଦାନ କରିଦେଲେ ?'' ଶ୍ରୀକୃଷ୍ଣ ଉତ୍ତର ଦେଲେ, ''ଯେଉଁପରି ତାଙ୍କ ଭକ୍ତିରେ ମୁଗ୍ଧ ହୋଇ ଆପଣ ରାତିରେ କୈଳାସ ଚ୍ଛଲିଆସିଲେ, ସେହିପରି ଭକ୍ତିରେ ବଶୀଭୂତ ହୋଇ ମୋତେ ବି ବର ପ୍ରଦାନ କରିବାକୁ ପଡ଼ିଲା ।''

ଭଗବାନ୍ ଶଙ୍କର ଧୀରେ ଧୀରେ କହିଲେ, ''ମୁଁ ମଧ୍ୟ ବଡ଼ ଦ୍ୱିଧାରେ ପଡ଼ିଯାଇଛି । ସେ ଆଡ଼େ ପ୍ରବୀରଙ୍କର ମାତା ଜୁହ୍ନାଙ୍କର ଆରାଧନାରେ ସନ୍ତୁଷ୍ଟ ହୋଇ ଗଙ୍ଗାଦେବୀ ମୁଁ ତ୍ରିଶୂଳ ଧରି ପ୍ରବୀରଙ୍କ ପକ୍ଷରୁ ଅର୍ଜୁନଙ୍କ ସହିତ ଯୁଦ୍ଧ କରେ ବୋଲି ଆଗ୍ରହ ପ୍ରକାଶ କରିଛନ୍ତି । ପୁଣି ଏ ଆଡ଼େ ଆପଣଙ୍କର ଅନୁରୋଧ । ଏପରି ଅବସ୍ଥାରେ ମୁଁ କୌଣସି ପକ୍ଷରୁ ବି ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହେବି ନାହିଁ ବୋଲି ନିଷ୍ପତ୍ତି ଗ୍ରହଣ କରିଛି ।''

ଭଗବାନ୍ ନୈରାଶ୍ୟପୂର୍ଣ୍ଣ କଣ୍ଠରେ ଅର୍ଜୁନଙ୍କୁ କହିଲେ, ''ଭାଇ ଅର୍ଜୁନ ! ମୋର ଆଶା ତ ଏହି ପର୍ଯ୍ୟନ୍ତ ଥିଲା । ଭଗବାନ୍ ଶଙ୍କରଙ୍କ ଉପରେ ମୋର ପୂର୍ଣ୍ଣ ଭରସା ଥିଲା । କିନ୍ତୁ ସେ ତ ସ୍ପଷ୍ଟ ଉତ୍ତର ଦେଇଦେଲେ; ସବୁକଥା ସଫା ସଫା କହିଦେଲେ । ଏବେ କ'ଣ କରାଯିବ?''ଅର୍ଜୁନ ଉତ୍ତର ଦେଲେ, ''ପ୍ରଭୋ ! ମୁଁ କିଛି ଜାଣେନା । ମୁଁ କେବଳ ଏତିକିମାତ୍ର ଜାଣେ ଯେ, ଆପଣ ଯାହା କରିବେ,ସେଥିରେ ହିଁ ମୋର ମଙ୍ଗଳ ହେବ । ହଁ, ଯୁଦ୍ଧ ସମୟ ପାଖେଇ ଆସିଲାଣି ।''

ଭଗବାନ୍ କ୍ଷଣେକାଳ କିଛି ଭାବିଲେ ଏବଂ ପୁଣି ଅର୍ଜୁନଙ୍କୁ ସଙ୍ଗରେ ନେଇ ଭଗବତୀ ଉମାଙ୍କ ପାଖକୁ ଗଲେ । ସେଠାରେ ପହଞ୍ଚି ସେ ଯୁଧିଷ୍ଠିର ମହାରାଜଙ୍କ ଅଶ୍ୱମେଧ ଯଜ୍ଞାନୁଷ୍ଠାନ, ପ୍ରବୀରଙ୍କର ବାଧା ଦେବା, ନିଜ ଆୟୁଧଦ୍ୱୟ ଓ ବରଦାନ ଦେବା କଥା ଶୁଣାଇଦେଲେ ଏବଂ ଅର୍ଜୁନଙ୍କର ବିଜୟଲାଭ ନିମନ୍ତେ ପ୍ରାର୍ଥନା କରି କହିଲେ, ''ଯଦି ଆପଣ ଯୁଦ୍ଧଭୂମିକୁ ମୋହିନୀରୂପରେ ଆସି ପ୍ରବୀରଙ୍କ ଠାରୁ ଆୟୁଧଦୁଇଟି ନେଇଯାଆନ୍ତେ, ତେବେ ଆମେ ଦୁହେଁ ନିଶ୍ଚିନ୍ତ ହୋଇଯାଆନ୍ତୁ ।'' ଭଗବତୀ ଉମା, 'ତଥାସ୍ତୁ' ବୋଲି କହିଦେଲେ । ଶ୍ରୀକୃଷ୍ଣ ତ ଏହା ହିଁ ଚ୍ଛହୁଁଥିଲେ । ସେ ଅର୍ଜୁନଙ୍କୁ ସଙ୍ଗରେ ଘେନି ଫେରିଲେ ।

ଅର୍ଜୁନ ଯାଇ ଯୁଦ୍ଧଭୂମିରେ ପହଞ୍ଚନ୍ତି ତ, ଦେଖିଲେ, ପ୍ରବୀର ନିଜର ବିଶାଳ ସେନାବାହିନୀ ଧରି, ଯୁଦ୍ଧର ପ୍ରତୀକ୍ଷା କରି ରହିଛନ୍ତି । ଯୁଦ୍ଧ ଆରମ୍ଭ ହେବାକୁ ଯାଉଥାଏ, ଠିକ୍ ସେହି ସମୟରେ ପ୍ରବୀର ନିଜ ଆଖିଆଗରେ ଆକାଶରେ ଜଣେ ନବଯୌବନସଂପନ୍ନା ଅପୂର୍ବ ଲାବଣ୍ୟବତୀ ଅପରୂପା ସୁନ୍ଦରୀ ରମଣୀଙ୍କୁ ଦେଖିବାକୁ ପାଇଲେ । ତାଙ୍କର ଆଖି ସେଠାରେ ଲାଖିରହିଲା । ବିଶ୍ୱରେ ଏପରି ସୌନ୍ଦର୍ଯ୍ୟ ରହିଛି ବୋଲି ସେ କଳ୍ପନା କରିପାରିଲେ ନାହିଁ । ଭଗବାନଙ୍କର ଅଘଟନ-ଘଟନ-

ପଟୀୟସୀ ମାୟା ଜିତେନ୍ଦ୍ରିୟ ଭକ୍ତ ପ୍ରବୀରଙ୍କ ବୁଦ୍ଧିକୁ ମୋହିତ କରିଦେଲା ଏବଂ ସେ ଜଣେ ବିଷୟଲିପ୍ସୁ କାମାସକ୍ତ ମନୁଷ୍ୟଙ୍କ ପରି ସେହି ଦେବୀଙ୍କ ନିକଟରେ ପ୍ରଣୟଭିକ୍ଷା କରିବାକୁ ଲାଗିଲେ । ମାୟାର ମହିମା କେତେ ବଡ଼ ନୁହେଁ !

ପରମ ସୌନ୍ଦର୍ଯ୍ୟମୟୀ ଦେବୀ କହିଲେ, " ଏ ଯୁଦ୍ଧଭୂମିରେ ପ୍ରେମବିଷୟକ କଥା ପାଗଳର ପ୍ରଳାପତୁଲ୍ୟ । ଯଦି ତୁମେ ସତରେ ପ୍ରେମଦାନ ନିମନ୍ତେ ଆଗ୍ରହୀ, ତେବେ ନିଜ ଆୟୁଧ ଫିଙ୍ଗିଦିଅ ।" ମାୟାବିମୋହିତ ପ୍ରବୀର ସେତେବେଳେ ନିଜତ୍ୱ ହରାଇ ମୂଢ଼ ପାଲଟି ଯାଇଥିଲେ । ତାଙ୍କର ବିବେକ, ବୁଦ୍ଧି ସଂପୂର୍ଣ୍ଣ ଲୋପ ହୋଇଯାଇଥିଲା । ସେ ତତ୍‌କ୍ଷଣାତ୍ ଶ୍ରୀକୃଷ୍ଣଙ୍କ ପ୍ରଦତ୍ତ ଆୟୁଧଦ୍ୱୟ ଦୂରକୁ ଫିଙ୍ଗିଦେଲେ । ଭଗବତୀ ସେ ଦୁଇଟି ଉଠାଇନେଇ ସହସା ଅନ୍ତର୍ଦ୍ଧାନ ହୋଇଗଲେ । ମାୟାର ପରଦା ଅପସାରିତ ହୋଇଗଲା । ପ୍ରବୀରଙ୍କର ଆଖି ଖୋଲିଗଲା । ସେ ସବୁକଥା ଜାଣିପାରି ମନେ ମନେ ପଶ୍ଚାତ୍ତାପ କରି କହିଲେ, "ମୁଁ କି ଅନର୍ଥ କରି ନ ଦେଲି ସତେ !"

ଶେଷରେ ସେ ବିଗ୍ଭର କଲେ, ସମ୍ଭବତଃ ଏ କାର୍ଯ୍ୟ ଭଗବାନ୍ ହିଁ କରିଛନ୍ତି । ପ୍ରେମପୂର୍ବକ ରୋଷ ପ୍ରକାଶ କରି ସେ ଭଗବାନଙ୍କୁ କହିଲେ, "ପ୍ରଭୋ ! ଯଦି ମାୟା ରଚନା କରି ଅସ୍ତ୍ର ନେଇଯିବାର ଥିଲା, ତେବେ ଆପଣ ଦେବାର ଅଭିନୟ କଲେ କାହିଁକି ?" ଭଗବାନ୍ ଉତ୍ତରରେ କହିଲେ, "ପ୍ରିୟବର ପ୍ରବୀର ! ମୁଁ ଅସ୍ତ୍ର ନେଇନାହିଁ । ଯଦି ମୋର ନେଇଯିବାର ଥାଆନ୍ତା, ତେବେ ମୁଁ ଦେଇଥାନ୍ତି କାହିଁକି ?" ପ୍ରବୀର ସହସା କହିଉଠିଲେ, "ପ୍ରଭୋ ! ଯଦି ଏମନ୍ତ କଥା, ତେବେ ଆପଣ ଅର୍ଜୁନଙ୍କୁ ସହାୟତା କରିବା ଉଚିତ ନୁହେଁ । ମୁଁ ମଧ୍ୟ ଆପଣଙ୍କୁ ନିଜ ପ୍ରାଣଠାରୁ ଅଧିକ ମଣେ । ଆପଣଙ୍କ ଶ୍ରୀଚରଣରେ ମୋର ଅନୁରାଗ କିଛି କମ୍ ନୁହେଁ । ଆପଣଙ୍କ ଅଭୟ ପାଦପଙ୍କଜରେ ମୋର ଭକ୍ତି କୌଣସି ଗୁଣରେ ଊଣା ନୁହେଁ ।"

ପ୍ରବୀରଙ୍କ କଥା ଶୁଣିବାମାତ୍ରେ ଅର୍ଜୁନ କହିଲେ, "ପ୍ରଭୋ ! ଏ ଯୁଦ୍ଧରେ ସହାୟତା ପ୍ରଦାନ କରିବାପାଇଁ ମୁଁ ଆପଣଙ୍କୁ ଡାକିଛି । ପ୍ରବୀରଙ୍କ ଠାରେ ଶକ୍ତି ନାହିଁ ତ, ସେ ଅଶ୍ୱ ଛାଡ଼ିଦିଅନ୍ତୁ ।" ପ୍ରବୀର ରୋଷପୂର୍ବକ ଉତ୍ତର ଦେଲେ, "ଅଶ୍ୱ ଛାଡ଼ିଦେବାପାଇଁ ମୁଁ ଧରିଆଣି ନାହିଁ ।" ବାସ୍, ଏତିକିରେ ଦୁଇପକ୍ଷ ଭିତରେ ଘମାଘୋଟ ଯୁଦ୍ଧ ଲାଗିଗଲା; ଶ୍ରାବଣମାସର ଜଳଧାରା ପରି ଶରବର୍ଷା ହେବାକୁ ଲାଗିଲା । ଆକାଶ ତୀକ୍ଷ୍ଣଶରରେ ଆଚ୍ଛାଦିତ ହୋଇଗଲା; କିନ୍ତୁ ଅର୍ଜୁନଙ୍କର ରଣକୌଶଳ କୌଣସି କାମରେ ଆସିଲା ନାହିଁ; ସେ ପରାଜିତ ହେବାକୁ ଲାଗିଲେ ।

ଭଗବାନ୍ କହିଲେ, "ଅର୍ଜୁନ ! ପ୍ରବୀରଙ୍କ ପ୍ରଭାବ ଦେଖିଲ ତ ? ମୁଁ

ସହାୟତା କରିବା ସତ୍ତ୍ୱେ ସେ ତୁମକୁ ପରାଜିତ କରିବାରେ ଲାଗିଛନ୍ତି । ଅବିରତ ଶରବୃଷ୍ଟି କରିବାରେ ଲାଗିରହି ଅର୍ଜୁନ ଉତ୍ତର ଦେଲେ, 'ପ୍ରଭୋ ! ଏଇଥିପାଇଁ ତ ମୁଁ ଆପଣଙ୍କୁ ଡାକିଛି । ବର୍ତ୍ତମାନ ମୁଁ ଆପଣଙ୍କ କୃପାବଳରେ ହିଁ ତାଙ୍କୁ ଶୀଘ୍ର ପରାଜିତ କରିଦେବି ।''

ଅର୍ଜୁନ ନିଜର ତୀକ୍ଷ୍ଣଶର ପ୍ରୟୋଗ କରିବାକୁ ଲାଗିଲେ; କିନ୍ତୁ ପ୍ରବୀର ସେସବୁକୁ ସେହି ଆକାଶମାର୍ଗରେ ହିଁ ଖଣ୍ଡବିଖଣ୍ଡ କରିଦେଲେ । ଅର୍ଜୁନ କ୍ରୋଧାନ୍ୱିତ ହୋଇ ଯେଉଁ ଅସ୍ତ୍ର ପ୍ରୟୋଗ କରୁଥାନ୍ତି, ପ୍ରବୀର ତାକୁ ସଙ୍ଗେ ସଙ୍ଗେ ନଷ୍ଟ କରିଦେଉଥାନ୍ତି । କିନ୍ତୁ ଶେଷରେ ସେଦିନ ଅର୍ଜୁନ ପ୍ରବୀରଙ୍କୁ ପରାସ୍ତ କଲେ ।

ପ୍ରବୀର ରୋଷପୂର୍ବକ କହିଲେ, ''ଅର୍ଜୁନ ! ଏହାକୁ ମୁଁ ଆପଣଙ୍କର ନୁହେଁ, ପ୍ରଭୁଙ୍କର ବିଜୟ ବୋଲି ମଣୁଛି । ଯଦି ପ୍ରଭୁଙ୍କ ବିନା ଆପଣ ମୋତେ ପରାଜିତ କରିଦିଅନ୍ତି, ତେବେ ମୁଁ ଆପଣଙ୍କୁ ବୀର ବୋଲି ଜାଣିବି ।'' ଅର୍ଜୁନ କହିଲେ, ''ମୁଁ ଯେତେବେଳେ ଭଗବାନଙ୍କୁ ଡାକିଆଣିଛି, ତାଙ୍କୁ ଛାଡ଼ିବି କାହିଁକି ? ତୁମେ ଯୁଦ୍ଧ ନ କରିବ ତ, ଫେରି ଚାଲିଯାଅ ।''

ଅର୍ଜୁନଙ୍କର ଏ କଥା ଶୁଣି ଭକ୍ତ ପ୍ରବୀର କହିଲେ, ''ପ୍ରଭୋ ! ଆପଣ ତ ସମସ୍ତଙ୍କର; ପୁଣି ଏ ଯୁଦ୍ଧଭୂମିରେ ଏ ପକ୍ଷପାତ କାହିଁକି ?'' ତତ୍କ୍ଷଣାତ୍ ସେ ପ୍ରଭୁଙ୍କର ବିଶ୍ୱବିମୋହିନୀ ମଧୁର ମନ୍ଦହାସ୍ୟ ଦେଖିବାକୁ ପାଇଲେ । ବାସ୍, ସେତିକିରେ କାମ ହୋଇଗଲା । ପ୍ରଭୁଙ୍କୁ ପ୍ରସନ୍ନ ଦେଖି, ପ୍ରବୀର ତାଙ୍କୁ ଅର୍ଜୁନଙ୍କ ରଥରୁ ଟାଣି ଆଣି ନିଜ ରଥରେ ବସାଇଦେଲେ । ଭଗବାନ୍ ଲଗାମ ଧରିଲେ । ଅତ୍ୟନ୍ତ ଗର୍ବର ସହିତ ପ୍ରବୀର କହିଲେ, ''ଅର୍ଜୁନ ! ଏଥର ମନଭରି ଯୁଦ୍ଧ କରନ୍ତୁ । ବର୍ତ୍ତମାନ ଆପଣଙ୍କୁ ହୁଏ ତ ପ୍ରାଣ ଧରି ପଳାଇଯିବାକୁ ପଡ଼ିବ ଅଥବା ଚିରଦିନ ପାଇଁ ଏହି ଯୁଦ୍ଧଭୂମିରେ ଶୟନ କରିବାକୁ ହେବ ।''

ପ୍ରବୀରଙ୍କୁ କୌଣସି ଉତ୍ତର ନ ଦେଇ ଅର୍ଜୁନ ଭଗବାନଙ୍କୁ କହିଲେ, ''ଭଗବାନ୍ ! ମୁଁ ଆପଣଙ୍କ ବିନା ବଞ୍ଚିପାରିବି ନାହିଁ । ଆପଣ ମୋ ରଥ ଉପରକୁ ଚାଲିଆସନ୍ତୁ । ଆପଣଙ୍କୁ ମୁଁ ଡାକିଛି ।'' ଏହା ଶୁଣି ଭଗବାନ୍ ଅର୍ଜୁନଙ୍କ ରଥ ଉପରକୁ ଆସି ଘୋଡ଼ାଙ୍କର ଲଗାମ ହାତକୁ ନେଇଗଲେ ।

ବିମର୍ଷ ହୋଇ ପ୍ରବୀର କହିଲେ, ''ପ୍ରଭୋ ! ଅନ୍ତତଃ ଦିନକର ଯୁଦ୍ଧରେ ହେଲେ ଆପଣ ମୋର ସାରଥି ହୋଇଥାଆନ୍ତେ !'' ପୁଣି ସେ ଅର୍ଜୁନଙ୍କୁ କହିଲେ, ''ଆଜି ମୁଁ ଆପଣଙ୍କର ପୁରୁଷପଣିଆ ଦେଖିବି ।''

ଅର୍ଜୁନ ଅତ୍ୟନ୍ତ ସାବଧାନତା ସହକାରେ ନିଜ ତୀକ୍ଷ୍ଣଶର ବୃଷ୍ଟି କରିବାରେ ଲାଗିଲେ; କିନ୍ତୁ ପ୍ରବୀର ସାଧାରଣ ବୀର ନ ଥିଲେ । ତାଙ୍କ ସମକ୍ଷରେ ଅର୍ଜୁନ

ବିଚଳିତ ହୋଇଗଲେ । ଇତି ମଧ୍ୟରେ ଭଗବାନ୍ କହି ଉଠିଲେ, "ମୋର ସହାୟତା ଲାଭ କରି ମଧ୍ୟ ତୁମେ ବିଜୟ ଲାଭ କରିପାରୁନା ?" ମହାଶକ୍ତିଶାଳୀ ଆଗ୍ନେୟାସ୍ତ୍ର ପ୍ରୟୋଗ କରି ଅର୍ଜୁନ କହିଲେ, "ପ୍ରଭୋ ! ଟିକିଏ ଧୈର୍ଯ୍ୟ ଧରନ୍ତୁ; ମୁଁ ୟାଙ୍କୁ ଏଇକ୍ଷଣି ପରାସ୍ତ କରିଦେଉଛି ।"

କିନ୍ତୁ ସେ ବିଫଳ ହେଲେ । ଅନ୍ୟ କେତେକ ଦିବ୍ୟାସ୍ତ୍ର ପ୍ରୟୋଗ କରିବା ପରେ ପ୍ରବୀର ଅବଶ୍ୟ ପରାସ୍ତ ହେଲେ; କିନ୍ତୁ ସେ ଅର୍ଜୁନଙ୍କୁ ଭର୍ତ୍ସନା କରି କହିଲେ, "ଅନ୍ୟମାନଙ୍କ ବଳରେ ଯେ ଯୁଦ୍ଧ କରନ୍ତି, ସେ ବୀରପଦବାଚ୍ୟ ନୁହଁନ୍ତି; ତାଙ୍କୁ ବୀର ବୋଲାଯାଏ ନାହିଁ । ଭଗବାନଙ୍କ ବିନା ଆପଣ ଯେ ମୋତେ ପରାସ୍ତ କରିପାରିବେ, ଏପରି ସାମର୍ଥ୍ୟ ଆପଣଙ୍କ ଠାରେ ଲେଶମାତ୍ର ବି ନାହିଁ ।"

ତା'ପରେ ସେ ଭଗବାନଙ୍କୁ କହିଲେ, "ପ୍ରଭୋ ! ଆପଣ ତ ଆମ ଉଭୟଙ୍କର । ଆପଣ ବର୍ତ୍ତମାନ ଅର୍ଜୁନଙ୍କ ରଥ ଚଳାଇବା ଛାଡ଼ି ନିରପେକ୍ଷଭାବରେ ଆମ ଦୁହିଁଙ୍କ ରଣକୌଶଳ ଦେଖନ୍ତୁ; ତା'ହେଲେ ପ୍ରକୃତରେ ବୀରଯୋଦ୍ଧା କିଏ, ତାହା ଆପଣ ଜାଣିପାରିବେ ଏବଂ ଆଜି ଅର୍ଜୁନ ମଧ୍ୟ ଯୁଦ୍ଧର ସ୍ୱାଦ ଆସ୍ୱାଦନ କରିପାରିବେ ।"

ଭଗବାନ୍ ହସିବାକୁ ଲାଗିଲେ । ଭକ୍ତଶିରୋମଣି ପ୍ରବୀର ଭଗବାନଙ୍କୁ ସନ୍ତୁଷ୍ଟ ଥିବାର ଜାଣି ତାଙ୍କୁ ପୁଣିଥରେ ଅର୍ଜୁନଙ୍କ ରଥରୁ ଟାଣିଆଣିଲେ ଏବଂ ପାର୍ଶ୍ୱସ୍ଥ ଗୋଟିଏ ତାଳଗଛରେ ବାନ୍ଧିଦେଲେ । ତା'ପରେ ସେ ଅର୍ଜୁନଙ୍କୁ କହିଲେ, "ଅର୍ଜୁନ ! ବର୍ତ୍ତମାନ ଆପଣ ନିଜ ବୀରତ୍ୱର ପରିଚୟ ଦିଅନ୍ତୁ । ମୁଁ ଏହିକ୍ଷଣି ଆପଣଙ୍କୁ ଯୁଦ୍ଧ କରିବାର ଫଳ ଚଖାଇଦେଉଛି ।" କିନ୍ତୁ ଅର୍ଜୁନ କରୁଣ ନୟନରେ ଭଗବାନଙ୍କ ଆଡ଼କୁ ଚାହିଁ କହିଲେ, "ପ୍ରଭୋ ! ମୁଁ କ'ଣ ଆପଣଙ୍କୁ ଏଇଥିପାଇଁ ଡାକିଥିଲି ? କୌରବଙ୍କର ସଭାରେ ତ ଅମିତପରାକ୍ରମୀ ଯୋଦ୍ଧାବୃନ୍ଦ ବି ଆପଣଙ୍କୁ ବାନ୍ଧିପାରି ନ ଥିଲେ, ଏଠାରେ କିପରି ଆପଣ ବନ୍ଦୀ ହେଲେ ? ମୁଁ ବଡ଼ ବ୍ୟଥିତ, ପ୍ରଭୋ ! ଆପଣ ଶୀଘ୍ର ଆସି ମୋ ଅଶ୍ୱଙ୍କ ଲଗାମ ହାତକୁ ନିଅନ୍ତୁ ।" ଯାହାଙ୍କର ନାମମାତ୍ର ଉଚ୍ଚାରଣ କଲେ ସକଳ ସଂସାରବନ୍ଧନ ଛିନ୍ନ ହୋଇଯାଏ, ସେହି ଅଚିନ୍ତ୍ୟଶକ୍ତି ଭଗବାନ୍ ଆଜି ନିଜ ପ୍ରେମୀଭକ୍ତଙ୍କର ପ୍ରେମଡୋରିରେ ବନ୍ଧା ହୋଇଛନ୍ତି; କିନ୍ତୁ ଅନ୍ୟ ପକ୍ଷରେ ବି ସେହିପରି ଜଣେ ଭକ୍ତ ରହିଛନ୍ତି । ତାଙ୍କର କରୁଣ ଆହ୍ୱାନ ମଧ୍ୟ ଭଗବାନଙ୍କୁ ଆକର୍ଷଣ କରୁଛି । ଭଗବାନ୍ ଅର୍ଜୁନଙ୍କର କରୁଣ ଆହ୍ୱାନ ଶୁଣିବାମାତ୍ରେ ବନ୍ଧନରଜ୍ଜୁ ଛିନ୍ନ କରି ଆସି ତାଙ୍କ ରଥ ଉପରେ ବସିଗଲେ ଏବଂ ରଥ ଚଳାଇବାକୁ ଲାଗିଲେ । ଭଗବାନଙ୍କର ଆଜି ବଡ଼ ବିଚିତ୍ର

ଅବସ୍ଥା । ସେ ପ୍ରେମୀ ଭକ୍ତଙ୍କର ଆକର୍ଷଣରେ ପ୍ରେମମୟ ହୋଇ ଆଶ୍ଚର୍ଯ୍ୟଜନକ ଲୀଳା କରିବାରେ ଲାଗିଛନ୍ତି ।

ପ୍ରବୀର ନିଜକୁ ସମ୍ଭାଳିପାରିଲେ ନାହିଁ । ସେ ପୁଣିଥରେ ଭଗବାନଙ୍କୁ କହିଲେ, "ପ୍ରଭୋ ! ବଡ଼ ଆଶ୍ଚର୍ଯ୍ୟର କଥା ! କିଛି ସମୟ ପାଇଁ ନିରପେକ୍ଷ ରହି ଆପଣ ଦୁଇଭକ୍ତଙ୍କର ଯୁଦ୍ଧ ଓ ବୀରତ୍ୱ ତ ଦେଖିଥାଆନ୍ତେ । ହେଉ, ଯାହା ଆପଣଙ୍କ ଇଚ୍ଛା ।" ସେ ଅର୍ଜୁନଙ୍କୁ ସମ୍ବୋଧନ କରି କହିଲେ, "ଆପଣଙ୍କ ଠାରେ ବୀରତ୍ୱ ବୋଲି କୌଣସି ବସ୍ତୁ ନାହିଁ । ଅନ୍ୟମାନଙ୍କ ସହାୟତାରେ ବୀରଙ୍କୁ ପରାଜିତ କରିବାର ପ୍ରଯତ୍ନ ସମରପ୍ରାଙ୍ଗଣରେ ଅତ୍ୟନ୍ତ ଅଶୋଭନୀୟ ।" ଏପରି କହି, ସେ କ୍ରୋଧଜର୍ଜ୍ଜରିତ ହୋଇ ଏତେ ତୀକ୍ଷ୍ଣଶର ଓ ଦିବ୍ୟାସ୍ତ୍ର ବୃଷ୍ଟି କଲେ ଯେ, ଅର୍ଜୁନ ବ୍ୟାକୁଳ ହୋଇଉଠିଲେ ଏବଂ ତାଙ୍କର ସମଗ୍ର ସେନା କ୍ଷତ-ବିକ୍ଷତ ହୋଇ, ଛିନ୍ନ-ଭିନ୍ନ ହୋଇ, ଛତ୍ରଭଙ୍ଗ ଦେଇ ପଳାୟନ କରିବାକୁ ଲାଗିଲେ । ଏଠାରେ ମଧ୍ୟ ଭଗବାନଙ୍କର ଲୀଳା ହିଁ କାର୍ଯ୍ୟ କରୁଥିଲା ।

ଏଥିରେ ବିସ୍ମୟ ପ୍ରକାଶ କରି ଭଗବାନ୍ ଶ୍ରୀକୃଷ୍ଣ କହିଲେ, "ଯେତେବେଳେ ଏକମାତ୍ର ପ୍ରବୀରଙ୍କ ସମ୍ମୁଖୀନ ହୋଇ ତୁମର ଏହି ଦୁରବସ୍ଥା, ସେତେବେଳେ ତୁମେ ଅନ୍ୟ ଯୋଦ୍ଧାମାନଙ୍କର ସମ୍ମୁଖୀନ ହେଲେ କ'ଣ କରିବ ?" ଅର୍ଜୁନ ତୁରନ୍ତ ନିଜର ପଳାୟନ କରୁଥିବା ସୈନ୍ୟମାନଙ୍କୁ କ୍ଷତ୍ରିୟଙ୍କର ବୀରଗତି ଓ ତାଙ୍କର ମର୍ଯ୍ୟାଦାପାଳନ ପ୍ରତି ଦୃଷ୍ଟି ଆକର୍ଷଣ କରାଇ ଯୁଦ୍ଧ ନିମନ୍ତେ ପ୍ରୋତ୍ସାହିତ କଲେ । ତାଙ୍କର ବିଶାଳ ସେନାବାହିନୀ ପୁଣି ପୂରାଶକ୍ତି ଲଗାଇ ପୂର୍ଣ୍ଣପ୍ରାଣରେ ପ୍ରବୀରଙ୍କ ସେନା ସହିତ ଯୁଦ୍ଧ କରିବାକୁ ଲାଗିଲେ । ଅର୍ଜୁନ ମଧ୍ୟ ଅତି ଚମତ୍କାରଭାବରେ ଅପୂର୍ବ କୌଶଳରେ ବାଣବୃଷ୍ଟି କରିବାରେ ଲାଗିପଡ଼ିଲେ । ଉଭୟ ପକ୍ଷ ନିଜ ନିଜର ବିଜୟ ନିମନ୍ତେ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ଚ୍ଚାଲିଥାନ୍ତି । ଶେଷରେ ପ୍ରବୀର ପରାସ୍ତ ହୋଇଗଲେ ଏବଂ ଅର୍ଜୁନ ବିଜୟୀ ହେଲେ ।

କିନ୍ତୁ ବୀର ପ୍ରବୀରଙ୍କର ଟିକିଏମାତ୍ର ବି ଚିନ୍ତା ନ ଥାଏ । ସେ ପୁଣି ଥରେ ଅର୍ଜୁନଙ୍କୁ ଭର୍ତ୍ସନା କରି କହିଲେ, "ଅର୍ଜୁନ ! ଆପଣ ପ୍ରକୃତ ବୀରତ୍ୱର ପରିଚୟ ଦିଅନ୍ତୁ । ଯଦି ଭଗବାନ୍ ଶ୍ରୀକୃଷ୍ଣଙ୍କ ବିନା ଆପଣ ଯୁଦ୍ଧ କରନ୍ତି, ତେବେ ଆପଣଙ୍କ ପକ୍ଷରେ ନିଜ ପ୍ରାଣରକ୍ଷା କରିବା ମଧ୍ୟ କଷ୍ଟକର ହୋଇପଡ଼ିବ ।" ତା'ପରେ ସେ ଭଗବାନଙ୍କୁ କହିଲେ, "ପ୍ରଭୋ ! ମୁଁ ମଧ୍ୟ ଆପଣଙ୍କର ଭକ୍ତ; କିନ୍ତୁ ଆଜି ଆପଣ ଅର୍ଜୁନ ଓ ମୋ ମଧ୍ୟରେ ପାର୍ଥକ୍ୟ ଦର୍ଶନ କରୁଛନ୍ତି । ଏପରି କାହିଁକି କରୁଛନ୍ତି, ପ୍ରଭୋ ! ମୁଁ ଆପଣଙ୍କ ଠାରୁ ବହୁତ କିଛି ଆଶା କରେ ।"

ଭଗବାନ୍ ହସିଦେଲେ । ପ୍ରବୀର ତାଙ୍କୁ ନିଜର ଅନୁକୂଳ ବୋଲି ଜାଣି

ସଙ୍ଗେ ସଙ୍ଗେ ଟାଣିଆଣିଲେ ଏବଂ ପୁଣି ଥରେ ପାର୍ଶ୍ୱସ୍ଥ ତାଳଗଛରେ କଷିକରି ବାନ୍ଧିପକାଇ କହିଲେ, ''ପ୍ରଭୋ ! ଏଥର ପ୍ରତିଜ୍ଞା କରନ୍ତୁ ଯେ, କାହାରି ପକ୍ଷ ଗ୍ରହଣ ନ କରି ନିରପେକ୍ଷଭାବରେ ଯୁଦ୍ଧ ଦେଖିବେ ।'' ପ୍ରଭୁ ହସ ହସ ବଦନରେ ମୌନପୂର୍ବକ ସ୍ୱୀକୃତି ପ୍ରଦାନ କଲେ ।

ଆଉ ଚିନ୍ତା କ'ଣ ! ପ୍ରବୀର ଶୀଘ୍ର ଡେଇଁପଡ଼ି ନିଜ ରଥ ଉପରକୁ ଉଠିଗଲେ ଏବଂ ଶରସନ୍ଧାନ କରି କହିଲେ, ''ପାର୍ଥ ! ବର୍ତ୍ତମାନ ଆପଣ ନିଜ ପ୍ରାଣ ଧରି ପଳାଇଯିବାକୁ ଅଥବା ଏହି ରଣକ୍ଷେତ୍ରରେ ଚିରଦିନ ପାଇଁ ଶୟନ କରିବାକୁ ପ୍ରସ୍ତୁତ ହୋଇଯାଆନ୍ତୁ ।'' ପ୍ରଭୁ ପ୍ରତିଜ୍ଞାବଦ୍ଧ ହୋଇସାରିଥାନ୍ତି । ପ୍ରଭୁ ବନ୍ଧା ହୋଇ ହସୁଥାନ୍ତି । ମନେ ହେଉଥାଏ, ସତେ ଯେପରି, ଆଜି ତାଙ୍କୁ ନିଜର ଏହି ବିବଶତାରେ ହିଁ ଆନନ୍ଦ ମିଳୁଛି ।

କିନ୍ତୁ ଅର୍ଜୁନ ପ୍ରଭୁଙ୍କ ଆଡ଼କୁ ଚାହିଁ ରହିଥା'ନ୍ତି । ସେ କହିଲେ,''ପ୍ରଭୋ ! ଏ କି ଲୀଳା କରୁଛନ୍ତି ! ମୋ ଜୀବନ ଉପରେ ବିପଦ ପଡିଛି । ମୋ ପ୍ରାଣ ବର୍ତ୍ତମାନ ସଙ୍କଟାପନ୍ନ । ମୋର ଆଉ ଧୈର୍ଯ୍ୟ ନାହିଁ । ମୁଁ ଅଧୀର ହୋଇପଡିଲିଣି । ମହାଭାରତ ଯୁଦ୍ଧରେ ଆପଣ ଶସ୍ତ୍ରଗ୍ରହଣ ନ କରିବାର ପ୍ରତିଜ୍ଞା କରି ମଧ୍ୟ ମୋର ରକ୍ଷା ନିମନ୍ତେ ସେହି ପ୍ରତିଜ୍ଞା ଭଙ୍ଗ କରିଥିଲେ । ଆପଣଙ୍କର ସେହି ପ୍ରାଣପ୍ରିୟ ଅର୍ଜୁନ ଆଜି ମୃତ୍ୟୁକବଳିତ; ସୁତରାଂ ଆଜି ପୁଣି ପ୍ରତିଜ୍ଞା ଭଙ୍ଗ କରନ୍ତୁ ଏବଂ ଶୀଘ୍ର ଆସି ମୋତେ ରକ୍ଷା କରନ୍ତୁ ।'' ଭଗବାନ୍ ତତ୍କ୍ଷଣାତ୍ ଅର୍ଜୁନଙ୍କ ରଥ ଉପରେ ପ୍ରକଟ ହୋଇଗଲେ । ସେ ସେହିପରି ହସିବାରେ ଲାଗିଥାଆନ୍ତି ।

ପ୍ରବୀର ବ୍ୟାକୁଳ ହୃଦୟରେ କହିଲେ, ''ପ୍ରଭୋ ! ଆପଣ ଏ କ'ଣ କଲେ ? ଆପଣ ନିଜ ପ୍ରତିଜ୍ଞା ବି ଭଙ୍ଗ କଲେ !'' ଭଗବାନ୍ ସଙ୍ଗେ ସଙ୍ଗେ କହିଲେ, ''ମୁଁ ତ କୌଣସି ପ୍ରତିଜ୍ଞା କରି ନ ଥିଲି ।''

ଭକ୍ତ ପ୍ରବୀର ଟିକିଏ ରୋଷରେ କହିଲେ, ''ପ୍ରଭୋ ! ଆପଣ ଯଦି ଅସତ୍ୟ କହନ୍ତି, ତେବେ ଏ ସଂସାରର ଅବସ୍ଥା କ'ଣ ହେବ ? ଆପଣ ଚୁପଚାପ ଯୁଦ୍ଧ ଦେଖିବେ ବୋଲି ପ୍ରତିଜ୍ଞା କରିଥିଲେ; କିନ୍ତୁ ପୁଣି ଆସି ଅର୍ଜୁନଙ୍କ ରଥ ଉପରେ ବସିଗଲେ !''

ଭଗବାନ୍ କହିଲେ, ''ଯେ ପ୍ରତିଜ୍ଞା କରିଥିଲେ, ତାଙ୍କୁ କହ, ଭାଇ !'' ପ୍ରବୀର ତାଳବୃକ୍ଷ ଆଡ଼କୁ ଚାହାଁନ୍ତି ତ ଭଗବାନ୍ ସେଠାରେ ବନ୍ଧା ହୋଇ ଠିଆ ହୋଇଛନ୍ତି । ସେ ଥରେ ତାଳଗଛକୁ ତ ଓ ଥରେ ଅର୍ଜୁନଙ୍କ ରଥ ଆଡ଼କୁ ଚାହୁଁଥାନ୍ତି । ବର୍ତ୍ତମାନ ସେହି ଏକ ଭଗବାନ୍ ଦୁଇଟି ରୂପ ଧାରଣ କରିଛନ୍ତି । ପ୍ରବୀର ଅର୍ଜୁନଙ୍କୁ କହିଲେ, ''ଅର୍ଜୁନ ! ଆପଣ ମହାନ୍, ଆପଣ ଧନ୍ୟ ଓ ଆପଣଙ୍କ ମାତା-ପିତା

ସମସ୍ତେ ଧନ୍ୟ ! ଆପଣଙ୍କ ନିମନ୍ତେ ହିଁ ଭଗବାନଙ୍କୁ ଦୁଇଟି ରୂପ ଧାରଣ କରିବାକୁ ପଡ଼ିଲା ।''

ପୁଣି ପ୍ରବୀର ତାଳଗଛରେ ବନ୍ଧା ହୋଇଥିବା ଭଗବାନଙ୍କୁ ଦେଖିବାରେ ଲାଗିଲେ । ତାଙ୍କ ହୃଦୟରେ ପ୍ରଚ୍ଛନ୍ନରୂପେ ରହିଥିବା ପ୍ରେମସାଗର ପ୍ରକଟିତ ହୋଇ ଉଚ୍ଛୁଳିପଡ଼ିଲା । ସେ ସ୍ୱୟଂ ନିଜକୁ ଭୁଲିଗଲେ । ଭଗବାନଙ୍କର ନିତ୍ୟ-ନୂତନ ନବ-ନବାୟମାନ ସୁର-ମୁନି-ମନମୋହିନୀ ରୂପମାଧୁରୀ ପ୍ରବୀରଙ୍କ ଉପରେ ଏପରି ଅସାଧାରଣ କୁହୁକ ବିଛାଇଦେଇଥିଲା ଯେ, ପ୍ରବୀରଙ୍କର ବାହ୍ୟଜ୍ଞାନ ସଂପୂର୍ଣ୍ଣରୂପେ ଲୋପ ହୋଇଗଲା । ସେ ଭଗବାନଙ୍କର ସେହି ଅଲୌକିକ ରୂପ-ସୁଧା-ସାଗରରେ ନିମଗ୍ନ ହୋଇଗଲେ ।

ଏତିକିବେଳେ ଭଗବାନ୍ ଅର୍ଜୁନଙ୍କୁ କହିଲେ, ''ପାର୍ଥ ! ଏହା ହିଁ ଉପଯୁକ୍ତ ସମୟ । ତୁମେ ଅତି ଶୀଘ୍ର ପ୍ରବୀରଙ୍କର ମସ୍ତକ ଛିନ୍ନ କରିଦିଅ ।'' ଅର୍ଜୁନ କହିଲେ, ''ପ୍ରଭୋ ! ପ୍ରବୀର ଯୁଦ୍ଧ ଛାଡ଼ି ଆପଣଙ୍କ ଧ୍ୟାନରେ ତଲ୍ଲୀନ; ଏପରି ଅବସ୍ଥାରେ ତାଙ୍କୁ ମାରିବା ଧର୍ମବିରୁଦ୍ଧ ।'' ଭଗବାନ୍ ତୁରନ୍ତ କହିଲେ, ''ଅର୍ଜୁନ ! ମୋର ଭକ୍ତ ପ୍ରବୀରଙ୍କୁ ସମ୍ମୁଖଯୁଦ୍ଧରେ ମାରିପାରିବାର ସାମର୍ଥ୍ୟ କାହାର ଅଛି ? ମୋର ଇଚ୍ଛା ଯେ, ମୋ ଭକ୍ତ ମୋ ଧ୍ୟାନରେ ନିମଗ୍ନ ରହି ମୋର ପରମଧାମରେ ପ୍ରବେଶ କରନ୍ତୁ । ଏହା ମୋର ଆଜ୍ଞା ଯେ, ତୁମେ ତାଙ୍କୁ ନିହତ କର । ତୁମକୁ କୌଣସି ପାପ ସ୍ପର୍ଶ କରିବ ନାହିଁ ।''

ଅର୍ଜୁନ ଗୋଟିଏ ଅତ୍ୟନ୍ତ ତୀକ୍ଷ୍ଣ ଅର୍ଦ୍ଧଚନ୍ଦ୍ରାକାର ଦିବ୍ୟଶର ନିକ୍ଷେପ କଲେ । ତାହା ଫଳରେ ପ୍ରବୀରଙ୍କର ମସ୍ତକ ଶରୀରରୁ ଛିନ୍ନ ହୋଇ ଗଡ଼ି ଗଡ଼ି ଯାଇ ଭଗବାନଙ୍କର ଶ୍ରୀଚରଣତଳେ ପଡ଼ିଗଲା । ସେଥିରୁ ଏକ ପରମ ନିର୍ମଳ ଜ୍ୟୋତି ନିର୍ଗତ ହୋଇ, ଯାଇ ପ୍ରଭୁଙ୍କ ମଙ୍ଗଳମୟ ଶ୍ରୀବିଗ୍ରହରେ ଲୀନ ହୋଇଗଲା । ପ୍ରବୀରଙ୍କର ପ୍ରାଣବାୟୁ ଉଡ଼ିଯିବା ପରେ ତାଙ୍କର ଯେଉଁ ସୈନ୍ୟମାନେ ଜୀବିତାବସ୍ଥାରେ ଥିଲେ, ସେମାନେ ଛତ୍ରଭଙ୍ଗ ଦେଇ ପଳାୟନ କଲେ । ମାହିଷ୍ମତୀ ନଗରୀରେ ଶୋକର ଛାୟା ଖେଳିଗଲା ।

ପ୍ରବୀରଙ୍କର ମୃତ୍ୟୁ ସମାଚ୍ାର ଶୁଣି ତାଙ୍କ ପିତା ବିଳାପ କରିବାକୁ ଲାଗିଲେ ଏବଂ ପୁତ୍ରଶୋକରେ ଶୋକାତୁରା କ୍ରନ୍ଦନରତା, କିନ୍ତୁ ପୁତ୍ରର ବୀର ତଥା ଭକ୍ତି-ଗତିରେ ଗର୍ବ ଅନୁଭବ କରୁଥିବା ତାଙ୍କ ମାତା କହିଲେ, ''ପୁତ୍ର ! ତୁ ଅର୍ଜୁନଙ୍କ ବାଣରେ ନିହତ ହୋଇ ପ୍ରଭୁଙ୍କ ପରମଧାମକୁ ଗମନ କଲୁ ଏବଂ ମୁଁ ମଧ୍ୟ ବୀର ତଥା କ୍ଷତ୍ରିୟକୁମାରଙ୍କର ଜନନୀ ବୋଲି ପ୍ରମାଣିତ ହେଲି । ମୋର ଜନ୍ମ ସଫଳ ହୋଇଗଲା; ସାର୍ଥକ ହୋଇଗଲା ।''

ଇତିମଧ୍ୟରେ ଭଗବାନ୍ ସେଠାରେ ପହଞ୍ଚି କ୍ରନ୍ଦନରତ ଜୁହ୍ନାଦେବୀଙ୍କୁ କହିଲେ, ''ଆପଣ ଚିନ୍ତା କରନ୍ତୁ ନାହିଁ । ଯଦି କହନ୍ତି, ମୁଁ ପ୍ରବୀରଙ୍କୁ ପୁନର୍ଜୀବିତ କରିଦେବି ।'' ଜୁହ୍ନାଦେବୀ କହିଲେ, ''ପ୍ରଭୋ ! ଆପଣଙ୍କ ସମ୍ମୁଖରେ ମୃତ୍ୟୁ ଲାଭ କରି ପୁନର୍ଜୀବିତ ହେବାକୁ କିଏ ବା କାମନା କରିବ ! କିନ୍ତୁ ମୋର ଅଭିଳାଷ ଯେ, ଆପଣ ଆମ ପୁତ୍ରକୁ ଯେଉଁ ଗତି ପ୍ରଦାନ କଲେ ଆମ ଦମ୍ପତିଙ୍କୁ ମଧ୍ୟ ସେହି ଗତି ପ୍ରାପ୍ତ ହେଉ ।''

ଭଗବାନ୍ 'ତଥାସ୍ତୁ' ବୋଲି କହି ପୁଣି କହିଲେ, ''ବର୍ତ୍ତମାନ ମହାରାଜ ନୀଳଧ୍ୱଜ ଅର୍ଜୁନଙ୍କୁ ଆଦରପୂର୍ବକ ବିଦାୟ ଦିଅନ୍ତୁ ତଥା ଯୁଧିଷ୍ଠିର ମହାରାଜଙ୍କ ଅଶ୍ୱମେଧ ଯଜ୍ଞରେ ନିର୍ଦ୍ଧାରିତ ସମୟରେ ଉପହାର ସହିତ ଉପସ୍ଥିତ ହୁଅନ୍ତୁ । ସେଠାରେ ପୁଣି ମୋର ଦର୍ଶନ ମିଳିବ ।'' ଏହା କହି ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ ।

ଭଗବାନଙ୍କର ଆଦେଶାନୁସାରେ ନୀଳଧ୍ୱଜ ଅର୍ଜୁନଙ୍କୁ ଅତ୍ୟନ୍ତ ସତ୍କାରପୂର୍ବକ ବିଦାୟ ଦେଲେ ଏବଂ ନିଜେ ଭଗବାନଙ୍କ ଭଜନ-ଧ୍ୟାନରେ ନିମଗ୍ନ ହୋଇଗଲେ । ପତିବ୍ରତା ମଦନମଞ୍ଜରୀ ମଧ୍ୟ ପତିଙ୍କ ସହିତ ସତୀ ହୋଇ ଭଗବାନଙ୍କ ପରମଧାମରେ ପ୍ରବେଶ କଲେ ।

*ହରି ଓଁ ତତ୍ ସତ୍*



# ୭. ସଂସାର-ଉଦ୍ୟାନ

*କୁରଙ୍ଗ ମାତଙ୍ଗ ପତଙ୍ଗଭୃଙ୍ଗ-*
*ମୀନା ହତାଃ ପଞ୍ଚଭିରେବ ପଞ୍ଚ ।*
*ଏକଃ ପ୍ରମାଦୀ ସ କଥଂ ନ ହନ୍ୟତେ*
*ଯଃ ସେବତେ ପଞ୍ଚଭିରେବ ପଞ୍ଚ ॥*

ଅର୍ଥାତ୍ "ହରିଣ, ହାତୀ, ପତଙ୍ଗ, ଭ୍ରମର, ମୀନ - ଏହି ପାଞ୍ଚପ୍ରକାର ଜୀବ ପ୍ରତ୍ୟେକେ ଗୋଟିଏ ଗୋଟିଏ ଭିନ୍ନ ଭିନ୍ନ ଇନ୍ଦ୍ରିୟର ବିଷୟ-ତାଡନାରେ ପଡ଼ି ଧ୍ୱଂସ ହୋଇଯାଆନ୍ତି । କର୍ଣ୍ଣ ବା ଶ୍ରବଣେନ୍ଦ୍ରିୟର ତାଡନା ହେତୁ ହରିଣ ବିଚରା ବ୍ୟାଧର ଜାଲରେ ପଡି, ତା'ର ଶିକାର ହୋଇ ମୃତ୍ୟୁବରଣ କରେ । ଚର୍ମ ବା ସ୍ପର୍ଶ-ଇନ୍ଦ୍ରିୟର ତାଡନା ହେତୁ ବିରାଟ ବଣୁଆ ହାତୀ ଶିକାରୀର ବନ୍ଧନରେ ପଡ଼ିଯାଇ ଜୀବନସାରା କ୍ରୀତଦାସ ହୋଇଯାଏ । ଚକ୍ଷୁ ବା ଦର୍ଶନେନ୍ଦ୍ରିୟର ତାଡନା ହେତୁ ପତଙ୍ଗମାନେ ନିଆଁକୁ ଡେଇଁପଡି ପୋଡିମରନ୍ତି । ନାକ ବା ଘ୍ରାଣେନ୍ଦ୍ରିୟର ତାଡନାରେ ପଡ଼ି ଭ୍ରମର ବିଚରା ପଦ୍ମଫୁଲ ଭିତରେ ବନ୍ଦୀ ହୋଇଯାଏ । ଜିହ୍ୱା ବା ରସନେନ୍ଦ୍ରିୟର ତାଡନା ହେତୁ ମାଛ ବିଚରା କେଉଟର ବନ୍‌ଶୀ କଣ୍ଟାର ଶିକାର ହୋଇଯାଏ । ଏହିପରି ମାତ୍ର ଗୋଟିଏ ଗୋଟିଏ ଇନ୍ଦ୍ରିୟର ତାଡ଼ନା ବିଭିନ୍ନ ଜୀବଙ୍କୁ ଯମଦ୍ୱାରକୁ ନେଇଯାଏ । ଆଉ ଯେଉଁ ଅବିବେକୀ ମନୁଷ୍ୟ ପାଞ୍ଚ ପାଞ୍ଚଟା ଇନ୍ଦ୍ରିୟର ବଶୀଭୂତ ହୋଇ ଏକାଧାରରେ ପାଞ୍ଚଟିଯାକ ବିଷୟ ସେବନ କରୁଥାଏ, ତା ଅବସ୍ଥା ବିଷୟରେ ବା କ'ଣ କହିବା ! ସେ କିପରି ବା ମୃତ୍ୟୁମୁଖରେ ନ ପଡ଼ିବ !"

ସୁତରାଂ ମନୁଷ୍ୟ ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରି, ସେମାନଙ୍କୁ ବିଷୟସମୂହରୁ ନିବୃତ୍ତ କରି ପରମାତ୍ମାଙ୍କ ଅଭିମୁଖୀ କରାଇବା ଉଚିତ । ଏ ବିଷୟରେ ଏଠାରେ ଗୋଟିଏ ଦୃଷ୍ଟାନ୍ତ ଦିଆଯାଉଛି ।

ଜଣେ ଚକ୍ରବର୍ତ୍ତୀ ରାଜା ଥିଲେ । ଥରେ ସେ ରାଜ୍ୟରେ ଘୋଷଣା କଲେ, "ଯଦି କୌଣସି ବ୍ୟକ୍ତି କାଲି ମୋର ଦର୍ଶନ କରିପାରିବେ, ତେବେ ସେ ଯେ କେହି ହୁଅନ୍ତୁ ନା କାହିଁକି, ମୁଁ ତାଙ୍କୁ ଯୁବରାଜପଦରେ ଅଭିଷିକ୍ତ କରିବି ।" ମୁଁ ମୋର ବଗିଚ୍ଚାର ଯେଉଁ ପ୍ରକୋଷ୍ଠରେ ନିବାସ କରେ, ତାହା କାଲି ଦିନସାରା ସମସ୍ତଙ୍କ ପାଇଁ ଖୋଲା ରହିବ । ମୋ ନିକଟକୁ ଯେ କୌଣସି ବ୍ୟକ୍ତି ଆସିପାରିବେ; ତାଙ୍କୁ କେହି ବାଧା ଦେଇପାରିବେ ନାହିଁ । ପ୍ରତ୍ୟେକ ବ୍ୟକ୍ତିଙ୍କୁ ବଗିଚ୍ଚାରେ ଭ୍ରମଣ

କରିବା ପାଇଁ କେବଳ ଦୁଇଘଣ୍ଟା ସମୟ ଦିଆଯିବ । କୌଣସି ବ୍ୟକ୍ତି ଦୁଇଘଣ୍ଟାରୁ ଅଧିକ ସମୟ ରହିପାରିବେ ନାହିଁ । ବଗିଚ୍ଚାରେ ପହଞ୍ଚିବା ପରେ ମୋ ପାଖରେ ପହଞ୍ଚିବାକୁ ତ ଅଧମିନିଟ୍ ସମୟ ଯଥେଷ୍ଟ ; କାରଣ ସେହି ରାସ୍ତାଟି ଅତ୍ୟନ୍ତ ସୁଗମ, ସହଜ ଓ ସୁଲଭ । ସୁତରାଂ ଯେଉଁ ବ୍ୟକ୍ତି ନିର୍ଦ୍ଧାରିତ ସମୟ ଭିତରେ ମୋର ଦର୍ଶନ କରିପାରିବେ, ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରାଯିବ ଏବଂ ଯେ ବଗିଚ୍ଚାରେ ଭ୍ରମଣ କରିବାରେ ବ୍ୟସ୍ତ ଥିବେ, ତାଙ୍କୁ ଦୁଇଘଣ୍ଟା ପରେ ସଙ୍ଗେ ସଙ୍ଗେ ବାହାର କରିଦିଆଯିବ ।''

ଏହି ଘୋଷଣା ରାଜ୍ୟର ସବୁଆଡ଼େ ପ୍ରଚ୍ଚାର କରିଦିଆଗଲା । ଆଉ ଦେଖିବେ କ'ଣ ! ସକାଳ ହେବାମାତ୍ରେ ସବୁ ଲୋକ ବଗିଚ୍ଚାରେ ପ୍ରବେଶ କରିବାରେ ଲାଗିଲେ । ବଗିଚ୍ଚାର ଫାଟକ ନିକଟରେ ହିଁ ପରିଚ୍ଚାଳକଙ୍କର ନିବାସ ସ୍ଥାନ ଥାଏ । ଯେଉଁ ବ୍ୟକ୍ତି ବଗିଚ୍ଚା ଭିତରକୁ ପ୍ରବେଶ କରନ୍ତି, ପରିଚ୍ଚାଳକ ତାଙ୍କୁ ଗୋଟିଏ ଟିକଟ (ଅନୁମତି ପତ୍ର) ଦିଅନ୍ତି ଏବଂ ତାର ଏକ ନକଲ ନିଜ ପାଖରେ ରଖନ୍ତି । ଏହିପରିଭାବରେ ଲୋକମାନେ ଟିକଟ ନେଇ ଭିତରକୁ ଯିବାକୁ ଲାଗିଲେ । ବଗିଚ୍ଚା ଭିତରକୁ ଯାଇ କେହି କେହି ଯୁଇ, ମଲ୍ଲୀ, କେତକୀ, ଗୋଲାପ ପ୍ରଭୃତି ଫୁଲର ସୁବାସ ଆଘ୍ରାଣ କରି ସୁଶୀତଳ ମନ୍ଦ ମନ୍ଦ ସୁବାସିତ ପବନରେ ଭ୍ରମଣ କରିବାକୁ ଲାଗିଲେ । ଆଉ କେହି କେହି କିଛି ଆଗକୁ ଯାଇ ମଧୁର ଓ ରସାଳ ଫଳ ତୋଳି ଖାଇବାକୁ ଲାଗିଲେ । ଆଉ କେତେକ ଲୋକ ତା'ଠାରୁ ଆଉ ଟିକିଏ ଆଗକୁ ଯାଇ ସର୍କସ, ବାୟସ୍କୋପ, ସିନେମା, ଯାଦୁଘର, ସଂଗ୍ରହାଳୟ (ମ୍ୟୁଜିୟମ୍), ଖେଳ-କସରତ, ନାଚ-ତାମସା ଇତ୍ୟାଦି ତଥା ବହୁପ୍ରକାର ଓ ବହୁପରିମାଣର ରତ୍ନ, ସୁନାରୂପାର ବିଭିନ୍ନପ୍ରକାର ମୁଦ୍ରା ଏବଂ ଆହୁରି ବି ଅନେକପ୍ରକାର ଅପୂର୍ବ ଜିନିଷ ଦେଖିବାକୁ ଲାଗିଲେ । ଆଉ କେହି କେହି ସେମାନଙ୍କ ଠାରୁ ବି ଆହୁରି ଆଗକୁ ଯାଇ ସୁକୋମଳ ପୁଷ୍ପଶଯ୍ୟା ଉପରେ ଗଡପଡ ହୋଇ ସ୍ତ୍ରୀମାନଙ୍କ ସହିତ ଆମୋଦପ୍ରମୋଦ, କେଳିକୌତୁକରେ ମଜ୍ଜି ରହିଲେ ଏବଂ ଆଉ କେତେ ଲୋକ ଆହୁରି ଆଗକୁ ଯାଇ ଗ୍ରାମୋଫୋନ, ରେଡ଼ିଓ ଇତ୍ୟାଦିର ସଙ୍ଗୀତ ଶୁଣିବାକୁ ଲାଗିଲେ । ଏପରିଭାବରେ ସେମାନେ ବଗିଚ୍ଚାରେ ଆରାମ ଓ ଭୋଗବିଳାସରେ ଲିପ୍ତ ହୋଇ ରାଜାଙ୍କ ଦର୍ଶନରୁ ବଞ୍ଚିତ ହେଲେ ଏବଂ ଅଜ୍ଞାତାବଶତଃ ଭାବିବାକୁ ଲାଗିଲେ, ''ଆମ ପରି ଲୋକ କେଉଁଠି, ରାଜଦର୍ଶନ କେଉଁଠି !'' ସେମାନଙ୍କ ମଧ୍ୟରୁ ଜଣେ ବୈରାଗ୍ୟବାନ୍, ଜିତେନ୍ଦ୍ରିୟ ଓ ସଂଯତମନା ପୁରୁଷ ସେହିସବୁ ସୁଖ-ସ୍ୱାଚ୍ଛନ୍ଦ୍ୟ, ଆରାମ, ସ୍ୱାଦ-ସୌଖିନ ଓ ଭୋଗବିଳାସ ପରିହାର

କରି ମହାରାଜଙ୍କ ନିକଟରେ ଯାଇ ପହଞ୍ଚିଗଲେ ଏବଂ ତାଙ୍କୁ ମହାରାଜ ଯୁବରାଜ ପଦରେ ଅଭିଷିକ୍ତ କରିଦେଲେ ।

ପରିବ୍ରାଜକ ମହାଶୟଙ୍କ ତରଫରୁ ସେହି ବଗିଚ୍ରେ ବହୁତ ସିପାହୀ ବୁଲୁଥିଲେ । ଯେଉଁ ବ୍ୟକ୍ତିଙ୍କର ନିର୍ଦ୍ଧାର୍ଯ୍ୟ ସମୟ ପୂରି ଯାଉଥିଲା, ସେମାନେ ତାଙ୍କ ଟିକଟ ନେଇଯାଇ ତାଙ୍କୁ ବଗିଚ୍ରୁ ବାହାର କରିଦେଉଥିଲେ । ଯେଉଁମାନେ ପୁଷ୍ପର ସୁବାସ ଓ ସୁବାସିତ ଶୀତଳ ବାୟୁ ସେବନ କରୁଥାନ୍ତି, ସେମାନେ କହନ୍ତି, "ଭାଇ ! ଆମକୁ ଆଉ କିଛି ସମୟ ରହିବାକୁ ଦିଅ ।" କିନ୍ତୁ ସିପାହୀ ତ ନିଯୁକ୍ତ ହୋଇଥାନ୍ତି ; କୌଣସି ବ୍ୟକ୍ତି ଗୋଟିଏ ମିନିଟ୍ ବି ଅଧିକ କିପରି ବା ରହିପାରିବେ ! ସିପାହୀ ତାଙ୍କୁ ଧକ୍କା ଦେଇ ବାହାର କରିଦେଉଥାନ୍ତି । ଯେ ମଧୁର ଫଳ ତୋଳି ଖାଉଥାନ୍ତି, ସେମାନେ ସିପାହୀଙ୍କୁ କହୁଥାନ୍ତି, "ଭାଇ ! ଆମକୁ ଆଉ ଦୁଇମିନିଟ୍ ରହିବାକୁ ସମୟ ଦିଅ । ଯେଉଁ ଫଳ ସଂଗ୍ରହ କରିଛୁ, ତାହା ବନ୍ଧାବନ୍ଧି କରିଦେଉ ।" ସିପାହୀମାନେ କହୁଥାନ୍ତି, "ଏଠାରୁ କେହି କୌଣସି ଜିନିଷ ନେଇ ପାରିବେ ନାହିଁ । ଯାହା ଖାଇଛନ୍ତି, ତାହା ହିଁ କେବଳ ତୁମର ।" ଏହା କହି ତାଙ୍କର ଗଣ୍ଠିଲି-ପତ୍ର ଛଡାଇ ନେଉଥାନ୍ତି ଏବଂ ତାଙ୍କୁ ଧକ୍କା ଦେଇ ବାହାର କରିଦେଉଥାନ୍ତି। ଯେଉଁମାନେ ସିନେମା, ଖେଳ-ତାମସା ଆଦି ଦେଖୁଥାନ୍ତି, ସେମାନେ ତାହା ଛାଡ଼ି ସେଠାରୁ ଉଠିବାକୁ ଇଚ୍ଛା କରୁ ନ ଥାନ୍ତି ; କିନ୍ତୁ ସେଠାରେ କେହି ମିନିଟିଏ ବି ଅଧିକ ସମୟ ବା ରହିପାରନ୍ତେ କିପରି ! ସିପାହୀ ସେମାନଙ୍କୁ ଧକ୍କା ମାରି ତଡିଦେଉଥାନ୍ତି । କେତେ ଲୋକ ତ ଟଙ୍କା, ସୁନା-ରୂପାର ମୋହର ଓ ରତ୍ନ ଆଦି ଗଣ୍ଠିଲି ବାନ୍ଧି ରଖିଥାନ୍ତି । ସିପାହୀମାନେ ପଚ୍ରନ୍ତି, "ସେ କି ଜିନିଷ ଏବଂ ତୁମେ ଏ ଗଣ୍ଠିଲି ବାନ୍ଧିଛ କାହିଁକି ?" ସେମାନେ ଉତ୍ତର ଦିଅନ୍ତି, "ଏଥିରେ ଟଙ୍କା, ସୁନା-ରୂପା ମୋହର ଓ ରତ୍ନ ଅଛି । ଆମେ ଯାକୁ ଆମ ସାଙ୍ଗରେ ନେଇଯିବୁ ।" ସିପାହୀମାନେ ତାଙ୍କୁ କହନ୍ତି, "ମୂର୍ଖ ! ଏସବୁ ତୁମେ କେବଳ ଦେଖିପାରିବ ; କିନ୍ତୁ ଏଠାରୁ କେହି କୌଣସି ବି ଜିନିଷ ନେଇଯାଇ ପାରିବ ନାହିଁ ।"ଜିନିଷ ଛାଡ଼ିଯିବାକୁ ସେମାନଙ୍କର ମନ ବଳୁ ନ ଥାଏ; ବଡ଼ ଦୁଃଖ ହେଉଥାଏ ମଧ୍ୟ ; କିନ୍ତୁ ଉପାୟ କ'ଣ ! ବାଧ୍ୟ ହୋଇ ଛାଡ଼ିଯିବାକୁ ପଡୁଥାଏ । ଯେଉଁ ଲୋକମାନେ ପୁଷ୍ପଶଯ୍ୟାରେ ଶୋଇ ସ୍ତ୍ରୀମାନଙ୍କ ସହିତ କେଳି-କୌତୁକରେ ମଜ୍ଜିଥାଆନ୍ତି , ସେମାନେ ତ କୌଣସିପ୍ରକାରେ ସେଠାରୁ ବାହାରିଯିବାକୁ ଚ୍ହୁଁ ନ ଥାନ୍ତି ; କିନ୍ତୁ ଆଇନ ଅମାନ୍ୟ କରି କ୍ଷଣକ ପାଇଁ ବି ଅଧିକ ସମୟ ସେଠାରେ କିପରି ବା ରହିପାରନ୍ତେ ! ନିର୍ଦ୍ଧାର୍ଯ୍ୟ ସମୟ ଶେଷ ହୋଇଯାଇଥିବାରୁ ସିପାହୀମାନେ ସେମାନଙ୍କୁ

ବାହାର କରିଦେଉଥାନ୍ତି । ଯେଉଁମାନେ ଗ୍ରାମୋଫୋନ, ରେଡ଼ିଓ ଇତ୍ୟାଦି ଶୁଣୁଥାନ୍ତି, ସମୟ ବିତିଗଲାଣି ବୋଲି ତ ସେମାନଙ୍କୁ ମୋଟେ ଜଣାପଡୁ ନ ଥାଏ । ସିପାହୀମାନେ ସେମାନଙ୍କର ଟିକଟ ଦେଖି କହୁଥାଆନ୍ତି, "ଚ୍ଲ, ଚ୍ଲ, ତୁମର ସମୟ ହୋଇଗଲାଣି ।" ଶ୍ରୋତାମାନେ କହନ୍ତି, "ଆରେ ଭାଇ ! ଏ ଗୀତଟା ପୂରା ଶୁଣିବାକୁ ଟିକିଏ ସମୟ ଦିଅ ।" ସିପାହୀମାନେ କହନ୍ତି, "ତୁମର ସମୟ ସରିଗଲାଣି । ତୁମେ ଆଉ କ୍ଷଣକ ପାଇଁ ବି ଏଠାରେ ରହିପାରିବ ନାହିଁ ।" ଏହା କହି ସେମାନଙ୍କୁ ମଧ୍ୟ ବଗିଚ୍ଚାରୁ ତଡ଼ିଦେଉଥାନ୍ତି ।

ଏହା ଏକ କାଳ୍ପନିକ ଦୃଷ୍ଟାନ୍ତ । ଏହାକୁ ନିମ୍ନପ୍ରକାରେ ବୁଝିବା ଆବଶ୍ୟକ : ଏଠାରେ ଚକ୍ରବର୍ତ୍ତୀ ରାଜା ହେଉଛନ୍ତି ପରମେଶ୍ୱର । ତାଙ୍କର ବଗିଚ୍ଚ ହେଉଛି ଏହି ସଂସାର । ରାଜାଙ୍କର ଘୋଷଣା ହେଉଛି ଶ୍ରୁତି-ସ୍ମୃତି ଆଦି ଶାସ୍ତ୍ର । ଲୋକମାନଙ୍କର ଯିବା-ଆସିବା ହେଉଛି ମନୁଷ୍ୟର ଜନ୍ମ ଓ ମୃତ୍ୟୁ । ବଗିଚ୍ଚାରେ ରହିବାକୁ ଧାର୍ଯ୍ୟ କରାଯାଇଥିବା ଦୁଇଘଣ୍ଟା ସମୟ ହେଉଛି ମନୁଷ୍ୟର ଆୟୁଷ । ସମସ୍ତେ ରାଜାଙ୍କର ଅବାଧ ଦର୍ଶନ କରିପାରିବେ, — ଏହି ଘୋଷଣା ସୂଚ୍ଚାଇଦିଏ ଯେ, ପ୍ରତ୍ୟେକ ମନୁଷ୍ୟର ଈଶ୍ୱରପ୍ରାପ୍ତି ନିମନ୍ତେ ସ୍ୱାଧୀନତା ରହିଛି । ଯୁବରାଜପଦ ହେଉଛି ପରମମଙ୍ଗଳ ପ୍ରାପ୍ତି । ସୁଷମ, ସହଜ ଓ ସୁଲଭ ରାସ୍ତାରେ ଚ୍ଲି ଅଧମିନିଟ୍‌ରେ ଠିକ୍‌ରାସ୍ତା ଧରିବା ହେଉଛି ଭକ୍ତି ଆଦି ଉଚ୍ଚକୋଟିର ସୁଗମ ସାଧନାଦ୍ୱାରା ଛଅମାସରେ ଈଶ୍ୱରସାକ୍ଷାତ୍‌କାରର ସଠିକ ଉପାୟ ଅବଲମ୍ବନ କରିବା । ପରିଚ୍ଚଳକ ହେଉଛନ୍ତି ଧର୍ମରାଜ ଯମ । ଟିକଟ ଦେବା ହେଉଛି ଆୟୁଷ ପ୍ରଦାନ କରିବା । ଟିକଟର ନକଲ ନିଜ ପାଖରେ ରଖିବା ହିଁ ଆୟୁଷର ହିସାବ ରଖିବା । ବଗିଚ୍ଚାରେ ପ୍ରବେଶ କରିବା ଏବଂ ବାହାରକୁ ଫେରିଯିବା ହେଉଛି ମନୁଷ୍ୟର ଜନ୍ମଲାଭ କରିବା ଏବଂ ମୃତ୍ୟୁମୁଖରେ ପଡ଼ିବା । ବଗିଚ୍ଚାରେ ପହଞ୍ଚି, ସେଠାରେ ଫୁଲର ସୁବାସ ଗ୍ରହଣ କରି ସୁଶୀତଳ ବାୟୁ ସେବନ କରିବା ହେଉଛି ଘ୍ରାଣେନ୍ଦ୍ରିୟର ବଶୀଭୂତ ହୋଇଥିବା ମନୁଷ୍ୟମାନଙ୍କର ଫୁଲମାଳା, ଅତର, ସେଣ୍ଟ୍ ଇତ୍ୟାଦିର ସୁଗନ୍ଧ ସେବନ କରିବାରେ ନିଜର ଅମୂଲ୍ୟ ସମୟ ନଷ୍ଟ କରିଦେବା । ବଗିଚ୍ଚାରେ ମଧୁର ଫଳ ଖାଇବା ହେଉଛି ରସନେନ୍ଦ୍ରିୟ ଜିହ୍ୱାର ବଶୀଭୂତ ମନୁଷ୍ୟମାନଙ୍କର ଖାଦ୍ୟପେୟାଦି ରସ ଆସ୍ୱାଦନରେ ସମୟ ଅତିବାହିତ କରିବା । ବଗିଚ୍ଚାରେ ଖେଳ-ତାମସା ଇତ୍ୟାଦି ଦେଖିବାର ଅର୍ଥ ଦର୍ଶନେନ୍ଦ୍ରିୟ ଚକ୍ଷୁର ବଶୀଭୂତ ହୋଇଥିବା ମନୁଷ୍ୟମାନଙ୍କର କ୍ଷଣଭଙ୍ଗୁର ବସ୍ତୁ ଦେଖିବାରେ ନିଜର ବହୁମୂଲ୍ୟ ସମୟ ନଷ୍ଟ କରିଦେବା । ବଗିଚ୍ଚାରେ ସ୍ତ୍ରୀମାନଙ୍କ ସହିତ ପୁଷ୍ପଶଯ୍ୟାରେ ଆମୋଦ-ପ୍ରମୋଦରେ ମଜ୍ଜି ରହିବା ହେଉଛି ସ୍ପର୍ଶେନ୍ଦ୍ରିୟ

ଚର୍ମର ବଶୀଭୂତ ହୋଇଥିବା ମନୁଷ୍ୟଙ୍କର ସ୍ପର୍ଶାଦିଦ୍ୱାରା କ୍ଷଣସ୍ଥାୟୀ ପଦାର୍ଥର ସ୍ପର୍ଶସୁଖ ଉପଭୋଗ କରି ନିଜ ଜୀବନକୁ ବିପଦରେ ପକାଇବା । ବଗିଚ୍ଚାରେ ଗ୍ରାମୋଫୋନ, ରେଡ଼ିଓ ଆଦି ଶୁଣିବା ହେଉଛି ଶ୍ରବଣେନ୍ଦ୍ରିୟ କର୍ଣ୍ଣର ବଶୀଭୂତ ହୋଇଥିବା ମନୁଷ୍ୟଙ୍କର ସାଂସାରିକ ହାସ୍ୟରସାତ୍ମକ ବିଷୟ ଶୁଣି ନିଜ ଜୀବନର ଅମୂଲ୍ୟ ସମୟ ନଷ୍ଟ କରିଦେବା । ରାଜାଙ୍କ ଦର୍ଶନରୁ ବଞ୍ଚିତ ହେବାର ଅର୍ଥ ହେଉଛି ପରମାତ୍ମାଙ୍କ ପ୍ରାପ୍ତିରେ ଶ୍ରଦ୍ଧାର ଅଭାବ ହେତୁ ଉପୁଜୁଥିବା ସାଧନା ସମ୍ବନ୍ଧୀୟ ଶିଥିଳତା । ବଗିଚ୍ଚାରେ ସିଧାସଳଖ ଯାଇ ରାଜାଙ୍କ ନିକଟରେ ପହଞ୍ଚିଥିବା ଜିତେନ୍ଦ୍ରିୟ ଓ ସଂଯତମନା ବୈରାଗ୍ୟବାନ୍ ପୁରୁଷ ହେଉଛନ୍ତି ସାକ୍ଷାତ୍କାରରୂପୀ ସିଦ୍ଧି ପ୍ରାପ୍ତ କରିବାର ଅଧିକାରୀ ଉଚ୍ଚକୋଟିର ସାଧକ । ରାଜାଙ୍କ ଦର୍ଶନ କରିବା ହିଁ ଭଗବତ୍‌ସାକ୍ଷାତ୍କାର ଏବଂ ଯୁବରାଜପଦପ୍ରାପ୍ତି ହିଁ ପରମପ୍ରଦପ୍ରାପ୍ତି । ବଗିଚ୍ଚାରେ ବୁଲୁଥିବା ପରିଚ୍ଚାଳକଙ୍କର ସିପାହୀମାନେ ହେଲେ ସଂସାରରେ ବୁଲୁଥିବା ଧର୍ମରାଜଙ୍କ ଦୂତ । ଟିକଟର ସମୟ ଶେଷ ହେବାର ଅର୍ଥ ମନୁଷ୍ୟର ଆୟୁଷର ସମାପ୍ତି । ବଗିଚ୍ଚାରୁ ଲୋକମାନଙ୍କୁ ବାହାର କରିଦେବା ଅର୍ଥ ଲୋକମାନଙ୍କୁ ନେଇ ଯମରାଜଙ୍କ ହାତରେ ଦେଇଦେବା । ବଗିଚ୍ଚାରେ ଫଳ ଓ ଟଙ୍କାର ଗଣ୍ଠିଲି ବାନ୍ଧିବାର ଅର୍ଥ ମୃତ୍ୟୁକାଳରେ ଅଜ୍ଞତା ଓ ଲୋଭବଶତଃ ଧନ ଇତ୍ୟାଦି ପଦାର୍ଥ ସଂଗ୍ରହ କରିବା । ଇଚ୍ଛା ନ ଥିଲେ ମଧ୍ୟ ଲୋକମାନଙ୍କୁ ସିପାହୀମାନେ ଧକ୍କା ମାରି ବାହାରକୁ ତଡିଦେବା ଅର୍ଥ, ଏଠାରେ ମରିବାର ଇଚ୍ଛା ନ ଥିଲେ ମଧ୍ୟ ଯମଦୂତମାନେ ଯନ୍ତ୍ରଣା ଦେଇ ଲୋକଙ୍କୁ ଯମଦ୍ୱାରକୁ ନେଇଯିବା ବୋଲି ବୁଝିବାକୁ ହେବ । ବଗିଚ୍ଚାରୁ କୌଣସି ଫଳ, ଟଙ୍କାପଇସା ଇତ୍ୟାଦି ପଦାର୍ଥ ସଙ୍ଗରେ ନେଇଯାଇ ନ ପାରିବାର ଅର୍ଥ, ଏ ସଂସାରର ସୁମିଷ୍ଟ ଖାଦ୍ୟପେୟ, ଧନରତ୍ନ, ସ୍ତ୍ରୀ-ପୁରୁଷ ଇତ୍ୟାଦି ପଦାର୍ଥକୁ ଏହି ସଂସାରରେ ହିଁ ଛାଡ଼ିଦେଇ ଯିବାକୁ ହୁଏ ; କାରଣ ଏହି ସଂସାରର କୌଣସି ବସ୍ତୁ କୌଣସିପ୍ରକାରେ କେହି ବି ଆଜିପର୍ଯ୍ୟନ୍ତ ମୃତ୍ୟୁ ସମୟରେ ନିଜ ସହିତ ନେଇଯାଇ ପାରିନାହାନ୍ତି, କି ନେଇଯାଇ ପାରିବେ ନାହିଁ । ସୁତରାଂ ଏହି ସକଳ ପାର୍ଥିବ ବସ୍ତୁ ହେଉଛି ବିନାଶଶୀଳ ଓ କ୍ଷଣଭଙ୍ଗୁର । ତେଣୁ ବିବେକ-ବୈରାଗ୍ୟପୂର୍ବକ ମନ ତଥା ଇନ୍ଦ୍ରିୟମାନଙ୍କୁ ନିବୃତ୍ତ କରି ପରମାନନ୍ଦସ୍ୱରୂପ ଅବିନାଶୀ ସଚ୍ଚିଦାନନ୍ଦ ପରମାତ୍ମା ପରମେଶ୍ୱରଙ୍କ ଠାରେ ସଂଲଗ୍ନ କରିବା ପରମ ଆବଶ୍ୟକ ।

***ହରି ଓଁ ତତ୍ ସତ୍***

~~ 0 ~~

# ୮. ଭଗବାନ୍ ଅଲୌକିକଭାବରେ କୃପା କରନ୍ତି

''ଆପଣ ଦିନସାରା ଗୀତାପାଠ କରୁଥାଆନ୍ତୁ ଏବଂ ଗୀତା ଅନୁସାରେ ଜୀବନ ଗଠନ କରିବାର ଉଦ୍ୟମ କରୁଥାଆନ୍ତୁ ; କିନ୍ତୁ ଉଦର-ପୂରଣ ପ୍ରତି ମଧ୍ୟ କିଛିଟା ଧ୍ୟାନ ଦେବା ତ ଆବଶ୍ୟକ ।''– ସାନଭାଇ ବଡ଼ଭାଇଙ୍କୁ କହିଲେ । ବଡ଼ଭାଇ ସଦାସର୍ବଦା ଗୀତାପାଠରେ ନିମଗ୍ନ ରହିଥାନ୍ତି । ସେ ଶୁଣିଥିଲେ ଯେ, 'ସଂପୂର୍ଣ୍ଣ ଗୀତାପାଠ ଅପେକ୍ଷା ଅର୍ଥ ଓ ଭାବସହିତ ଯଦି ପ୍ରତିଦିନ ଏକ ଅଧ୍ୟାୟ ଗୀତାପାଠ କରାଯାଏ, ତେବେ ତାହା ଅତି ଉତ୍ତମ ; କିନ୍ତୁ ଗୀତାର ଜ୍ଞାନ ଉପଦେଶ ଅନୁସାରେ ନିଜ ବ୍ୟାବହାରିକ ଜୀବନ ଯାପନ କରିବା, ନିଜ ଜୀବନକୁ ରୂପାନ୍ତରିତ କରିବା ହେଉଛି ସର୍ବୋତ୍ତମ । ଗୀତାରେ ଏପରି ଅନେକ ଶ୍ଳୋକ ରହିଛି, ଯେଉଁଥିରୁ କୌଣସି ଗୋଟିଏ ଶ୍ଳୋକକୁ ଆଧାର କରି ତଦନୁଯାୟୀ ନିଜର ଜୀବନଯାପନ କଲେ ମଧ୍ୟ, ମନୁଷ୍ୟର ଅଶେଷ କଲ୍ୟାଣ ସାଧିତ ହୋଇଥାଏ ।' ଚାରିଭାଇଙ୍କ ମଧ୍ୟରେ ଏହି ବଡ଼ଭାଇ ଥିଲେ ଅତ୍ୟନ୍ତ ଗୀତାପ୍ରେମୀ । ସେ ଗୀତାର ଦ୍ୱାଦଶ ଅଧ୍ୟାୟ ୧୭ଶ ଶ୍ଳୋକକୁ ନିଜ ଜୀବନରେ ରୂପାନ୍ତରିତ କରିବାକୁ ସର୍ବଦା ଯତ୍ନଶୀଳ ଥିଲେ । ସାନଭାଇଙ୍କର ଉପରୋକ୍ତ କଥା ଶୁଣି ମଧ୍ୟ ସେ ନିରବ ରହିଲେ ।

ଅନ୍ୟ ଜଣେ ସାନଭାଇ କହିଲେ, ''ଅର୍ଥୋପାର୍ଜନ ନିମନ୍ତେ ଆମ୍ଭମାନଙ୍କ ପରି ଆପଣଙ୍କୁ ମଧ୍ୟ ପରିଶ୍ରମ କରିବାକୁ ପଡ଼ିବ ।''

ତୃତୀୟ ଭାଇଜଣକ ମଧ୍ୟ ତାଙ୍କୁ ସମର୍ଥନ କରି କହିଲେ, ''ଆମ୍ଭେମାନେ ଆଉ କେତେଦିନ ରୋଜଗାର କରି ଆପଣଙ୍କୁ ଚଳାଉଥିବୁ ?''

ପ୍ରଥମ ସାନଭାଇଜଣକ ଭାବାବେଶରେ କହିଦେଲେ, ''ଆପଣ ଆମ୍ଭମାନଙ୍କ ଠାରୁ ଭିନ୍ନେ ହୋଇଯାଆନ୍ତୁ– ତାହା ହିଁ ସବୁଠାରୁ ଭଲ ହେବ ।''

ଦ୍ୱିତୀୟ ସାନଭାଇଜଣକ ଆହୁରି କର୍କଶ ସ୍ୱରରେ କହିଉଠିଲେ, ''ସତରେ ବଡ଼ଭାଇ ! ଆପଣଙ୍କ ସହିତ ଆମ୍ଭେମାନେ ଆଉ ଚଳିପାରିବୁ ନାହିଁ ।''

***ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଙ୍କ୍ଷତି ।***
***ଶୁଭାଶୁଭ ପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ ॥***

ବଡ଼ଭାଇ ଏହି ଶ୍ଳୋକଟି ପଢ଼ି ଗମ୍ଭୀରତାପୂର୍ବକ ଉତ୍ତର ଦେଲେ, ''ଭାଇ ! ଏହି ଶ୍ଳୋକଟି ଗୀତାରେ ଅଛି । ଅର୍ଜ୍ଜୁନଙ୍କୁ ଭଗବାନ୍ କହୁଛନ୍ତି, 'ଯେଉଁ ବ୍ୟକ୍ତି

କେବେ ହର୍ଷିତ ହୁଅନ୍ତି ନାହିଁ, ଦ୍ୱେଷ କରନ୍ତି ନାହିଁ, ଶୋକ କରନ୍ତି ନାହିଁ, କି କାମନା କରନ୍ତି ନାହିଁ ତଥା ଯେ କି ଶୁଭ, କି ଅଶୁଭ ସକଳ କର୍ମ ତ୍ୟାଗ କରିଦେଇଛନ୍ତି, ସେହି ଭକ୍ତିମାନ୍ ପୁରୁଷ ମୋର ପ୍ରିୟ ।'' ଗୀତାଭ୍ୟାସ କରୁଥିବା ବଡ଼ଭାଇ ଏହି ଶ୍ଳୋକ ଶୁଣାଇଲେ । ଇତିମଧ୍ୟରେ ତୃତୀୟ ସାନଭାଇଜଣକ ପାଟିକରି କହିଲେ, ''ଉପଦେଶ ନିଜ ପାଖରେ ରଖନ୍ତୁ । ଆଜି ହିଁ ଆପଣ ଭିନ୍ନେ ହୋଇଯାଆନ୍ତୁ ।''

''ତୁମ୍ଭେମାନେ ମୋତେ ଯେ ଭିନ୍ନେ କରିଦେଉଛ, ଏଥିରେ ମୋର କୌଣସି ହର୍ଷ ନାହିଁ, କି ଶୋକ ନାହିଁ ।''– ଗୀତାପ୍ରେମୀ ବଡ଼ଭାଇଜଣକ ଶାନ୍ତସ୍ୱରରେ ଉତ୍ତର ଦେଲେ । ମୋର କାହା ପ୍ରତି କୌଣସି ଦ୍ୱେଷ ନାହିଁ, କି ଭିନ୍ନେ ହେବାର ଆକାଙ୍‌କ୍ଷା ମଧ୍ୟ ନାହିଁ । ହର୍ଷ, ଶୋକ, କାମନା ତଥା ଦ୍ୱେଷରହିତ ପୁରୁଷ ହିଁ ପ୍ରଭୁଙ୍କର ପ୍ରିୟପାତ୍ର । ତୁମେମାନେ ଯାହା ଠିକ୍ ବୋଲି ଭାବୁଛ, ତାହା କର ।''

ପ୍ରଥମ ସାନଭାଇଜଣକ ନିଷ୍ପତ୍ତି ଶୁଣାଇଦେଇ କହିଲେ, ''ଭିନ୍ନେ କରି ନ ଦେଲେ, ଏହାଙ୍କର ବୁଦ୍ଧି ବାଟକୁ ଆସିବ ନାହିଁ । ଶ୍ରୁତିମଧୁର ଉପଦେଶ ପ୍ରଦାନ କରି ଇଏ ଆନନ୍ଦରେ ଦିନ କାଟିଦେବାକୁ ଚାହାନ୍ତି ।''

ଅନ୍ୟ ଦୁଇ ସାନଭାଇ ମଧ୍ୟ ତାଙ୍କ କଥାକୁ ଅନୁମୋଦନ କରି କହିଲେ, ''ଆମ୍ଭେମାନେ ଅନେକ ଦିନ ପାଳନ-ପୋଷଣ କରିଆସିଲୁ । ଏବେ ତ ଆମେ ଦାରିଦ୍ର୍ୟର ସମ୍ମୁଖୀନ ହେଲୁଣି । ଆଉ ଏଣିକି ତାହା ହୋଇପାରିବ ନାହିଁ ।''

ଭିତରୁ ଗୀତାଭ୍ୟାସୀ ବଡ଼ଭାଇଙ୍କର କର୍କଶଭାଷିଣୀ ପତ୍ନୀ ବଡ଼ପାଟି କରି କହିଲେ, ''ଆମେ ମିଶି ଏକାଠି ରହିଥିବାରୁ ଏ ତିନିଜଣଙ୍କ ପାଇଁ ମୋତେ ରୋଷାଇ କରିବାକୁ ପଡୁଛି । ଏମାନେ ଭିନ୍ନେ ହୋଇଯାଆନ୍ତୁ ; କିଛି ଚିନ୍ତା ନାହିଁ ।''

''ଅନୁକୂଳ ପରିସ୍ଥିତି ଆସି ପହଞ୍ଚିଲେ ମଧ୍ୟ ଯାହାଙ୍କର ମନରେ ହର୍ଷ ଜାତ ହୁଏ ନାହିଁ, ସେ ହିଁ ପ୍ରଭୁଙ୍କର ପ୍ରିୟପାତ୍ର ।'' – ଗୀତାଭ୍ୟାସୀ ନିଜ ପତ୍ନୀଙ୍କୁ ପ୍ରେମପୂର୍ବକ ବୁଝାଇଲେ, ''ତୁମେ ଏପରି କହିବା ଉଚିତ ନୁହେଁ । ପୁଣି ଇଏ ତ ଅନୁକୂଳ ପରିସ୍ଥିତି ବି ନୁହେଁ ; କାରଣ ଭଗବାନ୍ ତୁମକୁ ଏତେ ପ୍ରାଣୀଙ୍କର ସେବା କରିବାର ସୁଯୋଗ ଦେଇଥିଲେ । ଏହା ତ ତୁମର ବଡ଼ ସୌଭାଗ୍ୟର କଥା ଥିଲା ; ତୁମେ ଏଥିପାଇଁ ପ୍ରଭୁଙ୍କ ନିକଟରେ କୃତଜ୍ଞ ହେବା ଉଚିତ ଥିଲା ।''

ସାନ ତିନିଭାଇ ବଡ଼ଭାଇଙ୍କ ଆଗରେ କିଛି ଜିନିଷ ଥୋଇଦେଇ କହିଲେ, ''ଆପଣଙ୍କର ଏତକ ଗହଣା, ଲୁଗାପଟା, ବାସନକୁସନ ଓ ଟଙ୍କାପଇସା ଏଇଠି ରହିଲା ; ଏହି ଛୋଟ ଘରବଖରାଟା ଆପଣଙ୍କ ଭାଗରେ ପଡ଼ିଲା ।'' ସବୁ

ଭାଇମାନେ ତ ବଡ଼ଭାଇଙ୍କୁ ଭିନ୍ନେ କରିଦେବାକୁ ଆଗ୍ରହୀ ଥିଲେ ; ତା'ସାଙ୍ଗକୁ ଭାଉଜଙ୍କର କଟୁବାକ୍ୟ କ୍ରୋଧାଗ୍ନିରେ ଘୃତାହୁତି ଦେବା ପରି କାମ କଲା ।

"ଭଗବାନଙ୍କର ଯେପରି ଇଚ୍ଛା !"– ଗୀତାଭ୍ୟାସୀ ବଡ଼ଭାଇ ଶାନ୍ତଚିତ୍ତରେ ଉତ୍ତର ଦେଲେ । ତାଙ୍କର ମୁଖମଣ୍ଡଳ ପୂର୍ବ ପରି ସ୍ୱଭାବତଃ ପ୍ରସନ୍ନ ଓ ପ୍ରଶାନ୍ତ ଥାଏ । ତାଙ୍କ ଚେହେରାରେ ଚିନ୍ତାର କୌଣସି ରେଖାପାତ ହେବାର ଦେଖାଯାଉ ନ ଥାଏ ।

× × × ×

"ବର୍ତ୍ତମାନ ବି ଆପଣ ଚୁପଚାପ ହୋଇ ବସି ରହିଛନ୍ତି ; ଘର କିପରି ଚଳିବ ?" ଗୀତାଭ୍ୟାସୀ ମହାଶୟଙ୍କର ପତ୍ନୀ କହିଲେ । ଉତ୍ତର ମିଳିଲା, ***"ନ କାଙ୍‌କ୍ଷତି"*** । "ମୋର କୌଣସି ଧନର ଆକାଙ୍‌କ୍ଷା ନାହିଁ । ଆକାଙ୍‌କ୍ଷାରହିତ ବ୍ୟକ୍ତି ହିଁ ପ୍ରଭୁଙ୍କର ପ୍ରିୟପାତ୍ର ।"

"ସବୁତକ ଟଙ୍କା ଖର୍ଚ୍ଚ ହୋଇଗଲେ ଚଳିବା କିପରି ?" – ପୁଣି ପ୍ରଶ୍ନ ହେଲା ।

***'ନ ଶୋଚତି'***– ସଂକ୍ଷେପରେ ଉତ୍ତର ମିଳିଲା, "ଶୋକରହିତ ପୁରୁଷ ପ୍ରଭୁଙ୍କର ପ୍ରିୟପାତ୍ର । ଏଣୁ ଜୀବିକାନିର୍ବାହ ନିମନ୍ତେ ମୁଁ ଶୋକାକୁଳ ନୁହେଁ ।"

ଗୀତାଭ୍ୟାସୀଙ୍କର ପତ୍ନୀ ନୀରବ ହୋଇଗଲେ ।

× × × ×

"ଆଉ ତ ଏବେ ମୋ ପାଖରେ କିଛି ହେଲେ ଟଙ୍କାପଇସା ନାହିଁ, କ'ଣ କରିବି ?"– ଚିନ୍ତିତ ହୋଇ ପତ୍ନୀ ଦିନେ ପତିଙ୍କୁ ପଚାରିଲେ ।

***"ନ କାଙ୍‌କ୍ଷତି"***– ବୋଲି ସେହି ପୁରୁଣା ଉତ୍ତର ମିଳିଲା ।

"ଦେହରେ ତ ଆଉ ଖଣ୍ଡିଏ ବି ଗହଣା ନାହିଁ ।"– କିଛିଦିନ ପରେ ପତ୍ନୀ ଦୁଃଖିତ ହୋଇ ପୁଣି କହିଲେ , "ସବୁକିଛି ତ ପେଟପୂଜାରେ ଶେଷ ହୋଇଗଲା; ଏବେ ହେଲେ ଆପଣ କିଛି ବ୍ୟବସ୍ଥା କରନ୍ତୁ ।" ***'ନ ଶୋଚତି'***– ପୁଣି ସେହି ଚାରିଅକ୍ଷରବିଶିଷ୍ଟ ଉତ୍ତର ମିଳିଲା । ସ୍ତ୍ରୀ ନିରାଶ ହୋଇ ମନକଥା ମନରେ ମାରି ରହିଲେ ।

× × × ×

କାନ୍ଦି କାନ୍ଦି ଗୀତାଭ୍ୟାସୀଙ୍କ ପତ୍ନୀ କହିବାକୁ ଲାଗିଲେ, "ବର୍ତ୍ତମାନ ମୋ ପାଖରେ ଆଉ କିଛି ବି ନାହିଁ । ନିଜ ଘର ବି ବିକ୍ରି ହୋଇଗଲାଣି । ଏବେ ଭଡ଼ାଘରେ ରହୁଛେ । ପଡ଼ୋଶୀଙ୍କ ଠାରୁ ବାସନ ଉଦ୍ଧାର ଆଣି ସେଥିରେ ରୋଷାଇ

କାମ ଚଳାଉଛି । ଖଣ୍ଡେଦୁଇଖଣ୍ଡ ପିନ୍ଧାଲୁଗା ଛଡ଼ା ଆମ ପାଖରେ ତ ଆଉ ଟଙ୍କାପଇସା, ଗହଣାଗାଣ୍ଠି, ବାସନକୁସନ କି ଅନ୍ୟ କୌଣସି ଜିନିଷ ନାହିଁ, ଯେଉଁଥିରେ କି ଆମ ଜୀବିକାନିର୍ବାହ ହୋଇପାରିବ । ବର୍ତ୍ତମାନ କିଛି ବ୍ୟବସ୍ଥା କରନ୍ତୁ ।''— ପତ୍ନୀ ଆଶାନ୍ୱିତା ହୋଇ ଆଗ୍ରହ ପ୍ରକାଶ କଲେ ।

*'ନ କାଙ୍‌କ୍ଷତି'*– ବୋଲି ପୁଣି ସେହି ପୁରୁଣା ଉତ୍ତର ମିଳିଲା ।

ଲୁହ ପୋଛୁ ପୋଛୁ ଅଧୀରା ହୋଇ ପତ୍ନୀ କହିଲେ, ''ଶେଷରେ କାମ ଚଳିବ କିପରି ?''

***''ନ ଶୋଚତି*** — ମୋର କୌଣସି ଶୋକ ନାହିଁ ; ଏପରି ଶୋକରହିତ ପୁରୁଷ ପ୍ରଭୁଙ୍କର ପ୍ରିୟ ।'' କହି ଗୀତାଭ୍ୟାସୀ ନୀରବ ହୋଇଗଲେ ।

''ବଡ଼ ବିଚିତ୍ର ବୁଦ୍ଧି ଆପଣଙ୍କର !''– ପତ୍ନୀ ବିରକ୍ତି ପ୍ରକାଶ କରି କହିଲେ, ''ମୋର ତ ଆଶା ଥିଲା ଯେ, ସବୁକିଛି ସରିଯିବା ପରେ ଆପଣ କିଛି ଗୋଟିଏ ବ୍ୟବସ୍ଥା କରିବେ ; କିନ୍ତୁ ***'ନ କାଙ୍‌କ୍ଷତି', 'ନ ଶୋଚତି'***– ଏହାଦ୍ୱାରା ଭଗବାନ୍ ସନ୍ତୁଷ୍ଟ ହୋଇଥାଆନ୍ତି– ଏସବୁ ଶୁଣି ଶୁଣି ତ ମୁଁ ହଇରାଣ ହୋଇଗଲିଣି ।''

'ମୁଁ ସତ କହୁଛି, ବ୍ରାହ୍ମଣୀ !'– ଗୀତାଭ୍ୟାସୀ ବ୍ରାହ୍ମଣ କହିବାକୁ ଆରମ୍ଭ କଲେ, 'ଆଜି ସକାଳର କଥା । ଶୌଚ ଶେଷ କରି ମୁଁ ନଦୀକୂଳକୁ ଯାଇ ଦେଖିଲି, ନଦୀର ଜଳ ଉପର ଆଡୁ ଶୁଖିଯାଇଛି, ତଳ ଆଡ଼େ ପାଣି ଧାର ଚାଲିଛି । ଜଳ ନିମନ୍ତେ ମୁଁ ଘାଟକୂଳରେ ଗାତ ଖୋଳେ ତ, ସେଭିତରୁ ମଣି-ମାଣିକ୍ୟ ତଥା ସ୍ୱର୍ଣ୍ଣମୁଦ୍ରାରେ ପୂର୍ଣ୍ଣ ଗୋଟିଏ ଚୋକେଇ ବାହାରିଲା । ସେତିକିବେଳେ ଭଗବାନଙ୍କ ବାଣୀ ମୋର ହଠାତ୍ ମନେପଡ଼ିଗଲା– ''ଅନୁକୂଳର ପ୍ରାପ୍ତିରେ ଯେ ହର୍ଷିତ ହୁଅନ୍ତି ନାହିଁ, ସେ ମୋର ପ୍ରିୟ ।'' ସୁତରାଂ ସେହି ମଣିମାଣିକ୍ୟାଦି ରତ୍ନରାଶିକୁ ଦେଖି ମଧ୍ୟ ମୁଁ ଟିକିଏମାତ୍ର ହର୍ଷିତ ହେଲି ନାହିଁ । ଭଗବାନ୍ **'ନ ଦ୍ୱେଷ୍ଟି'** କହିଛନ୍ତି, ଏଣୁ ମୁଁ ସେଥିପ୍ରତି ଦ୍ୱେଷ ମଧ୍ୟ କଲି ନାହିଁ; ତାହା ବାହାର କରି ଆଉ କେଉଁଠି ଫୋପାଡ଼ି ମଧ୍ୟ ଦେଲି ନାହିଁ । ମୋର ସେଥିପ୍ରତି ଆକାଙ୍‌କ୍ଷା ମଧ୍ୟ ନ ଥିଲା । ତାହା ଯେମିତି ଥିଲା, ଠିକ୍ ସେମିତି ପୋତିଦେଇ ମୁଁ ଫେରିଆସିଲି । ସେହି ଅମାପ ଧନରାଶି ତ୍ୟାଗ କରିଦେଇଥିଲେ ମଧ୍ୟ ମୋର ସେଥିରେ ଟିକିଏମାତ୍ର ଶୋକ ନାହିଁ । ଏହିପରିଭାବରେ ଭଗବାନଙ୍କର ଅସୀମ ଦୟାରୁ ମୋର ସେଥିରେ ହର୍ଷ ନାହିଁ, କି ଦ୍ୱେଷ ନାହିଁ ଏବଂ ପଶ୍ଚାତ୍ତାପ ନାହିଁ, କି ଆକାଙ୍‌କ୍ଷା ମଧ୍ୟ ନାହିଁ । ମୁଁ ତ ଆଣିଲି ନାହିଁ ; କିନ୍ତୁ କେହି ଯଦି ଆଣି ତାହା ମୋତେ ଦେଇଯାଆନ୍ତି, ତେବେ ମୁଁ ଯେ ତାହା ରଖିବି, ସେପରି ଭାବନା ମଧ୍ୟ ମୋର ନାହିଁ । କାରଣ

ଭଗବାନ୍ କହିଛନ୍ତି– 'କି ଶୁଭ, କି ଅଶୁଭ ସକଳ କର୍ମର ଯେ ପରିତ୍ୟାଗୀ, ସେହି ଭକ୍ତିମାନ ପୁରୁଷ ମୋର ପ୍ରିୟ ।'

ପତ୍ନୀ ବିରକ୍ତି ପ୍ରକାଶ କରି କହିଲେ, "ଆପଣଙ୍କର ସିନା ନାହିଁ, କିନ୍ତୁ ମୋର ତ ଆକାଙ୍କ୍ଷା ରହିଛି ।" ପଣ୍ଡିତ ମହାଶୟ କହିଲେ, "ତୁମେ ମଧ୍ୟ ଆକାଙ୍କ୍ଷା ପୋଷଣ କରିବା ଉଚିତ ନୁହେଁ ।"

× × × ×

"ଆରେ ! ଇଏ ତ କଳା ନାଗ ।"– ଚମକିପଡ଼ି ଜଣେ ଚୋର କହିଲା । "ଗୀତାଭ୍ୟାସୀ ତ ମହାଧୂର୍ତ୍ତ, ବଡ଼ ଚାଲାକ ।" – ଅନ୍ୟ ଚୋରଟି ଆସ୍ତେ କରି ଉତ୍ତର ଦେଲା । "ତାଙ୍କ ଚାତୁରୀ ଦେଖ ତ ! ଆମେ ତାଙ୍କ ଘରେ ପଶିଛୁ ବୋଲି ଜାଣିପାରି ସେ ବଡ଼ ଜ୍ଞାନବୋଳା ଚତୁର କଥା କହିବାକୁ ଲାଗିଲେ ଏବଂ ଆମକୁ ସାପ-କାମୁଡ଼ାଇ ମାରିବା ଅଭିପ୍ରାୟରେ ହିଁ ଟୋକେଇରେ ମଣି-ମାଣିକ୍ୟ, ହୀରା, ରତ୍ନ ଆଦି ଭରି ରହିଥିବା କଥା ଶୁଣାଇ ଆମକୁ ଠକି ଦେଲେ ।"

"ତାଙ୍କ ସ୍ତ୍ରୀ ମଧ୍ୟ କମ୍ ଚାଲାକ ନୁହଁନ୍ତି ।"– ତୃତୀୟ ଚୋରଟି ହଠାତ୍ କହି ଉଠିଲା । "ଦୁହେଁଯାକ ମିଶି ଆମକୁ ଠକି ଦେଇଛନ୍ତି । ସତରେ ଦୁହେଁ ଭାବିଚିନ୍ତି ଆଗରୁ ସ୍ଥିର କରିନେଇଥିଲେ ।"

"ସେହି ଉପାୟଟି ଠିକ୍ ତାଙ୍କ ପ୍ରତି ପ୍ରୟୋଗ କରାଯାଉ ।"– ଚତୁର୍ଥ ଚୋରଟି ପରାମର୍ଶ ଦେଲା । "ନାଗସାପ ସହିତ ଏ ଟୋକେଇଟି ତାଙ୍କରି ଘରଭିତରେ ପକାଇଦିଆଯାଉ ; ବାସ୍, ***'ନ ଶୋଚତି', 'ନ କାଙ୍କ୍ଷତି'***ର ପୂରା ଅଭ୍ୟାସ ହୋଇଯିବ ।"

ରାତିରେ ଯେତେବେଳେ ବ୍ରାହ୍ମଣ ନିଜ ପତ୍ନୀଙ୍କୁ ମଣି-ରତ୍ନପୂର୍ଣ୍ଣ ଟୋକେଇଟି କଥା କହୁଥିଲେ, ସେତିକିବେଳେ ଚୋରମାନେ ତାଙ୍କ ଘରେ ପଶିଥିଲେ ଏବଂ ସେମାନେ ତାଙ୍କ କଥା ଶୁଣି ଧନଲୋଭରେ ନଦୀକୂଳକୁ ଆସି ଟୋକେଇଟିକୁ ବାହାର କରିଥିଲେ । ଟୋକେଇଟିର ମୁହଁ ଖୋଲିଦେବା ସଙ୍ଗେ ସଙ୍ଗେ ସେମାନେ ଦେଖିଲେ, ତା'ଭିତରେ ଗୋଟିଏ ଭୟଙ୍କର କଳା ନାଗସାପ ଫୁଙ୍କାର କରି ଉଠିଲା । ସେହି ସମୟରେ ସେମାନଙ୍କ ମଧ୍ୟରେ ଉପରଲିଖିତ କଥାଭାଷା ହୋଇଥିଲେ ।

ଚତୁର୍ଥ ଚୋରଟିର କଥାକୁ ସମସ୍ତେ ସମର୍ଥନ କଲେ । ଟୋକେଇଟିର ମୁହଁ ବନ୍ଦ କରିଦେଇ ଚାରିଜଣଯାକ ଚୋର ତାକୁ କାନ୍ଧେଇ ଆଣି ଗୀତାଭ୍ୟାସୀଙ୍କ ଘର ନିକଟରେ ପହଞ୍ଚିଲେ । ଘର ଉପରେ ଚାଳରେ ଗୋଟିଏ କଣା କରି ତିନୋଟି

ଗ୍ରେର ତ ପଳାଇଗଲେ । ଚତୁର୍ଥ ଗ୍ରେରଟି ଘର ଗ୍ରଳରେ ହୋଇଥିବା ସେହି କଣା ମୁହଁରେ ଟୋକେଇଟିକୁ ଓଲଟାଇ ଅଜାଡ଼ିଦେଲା ଏବଂ ସେଠାରୁ ଶୀଘ୍ର ପଳାଇଗଲା ।

× × × ×

"ଆହେ ! ଦେଖିଲଣି; ଘରେ ସୁନାମୋହର ଗଦା ହୋଇଗଲାଣି !"– ଗୀତାଭ୍ୟାସୀ ପଣ୍ଡିତ ମହାଶୟଙ୍କର ପତ୍ନୀ ମଣି-ମାଣିକ୍ୟ ଓ ସୁନାମୋହର ଶବ୍ଦରେ ଉଠିପଡ଼ିଲେ । ନାଗସାପଟି ମଣିମାଣିକ୍ୟ ତଳେ ଗ୍ରପି ହୋଇ ମରିଯାଇଥିଲା । ବ୍ରାହ୍ମଣୀ ଉତ୍‌ଫୁଲ୍ଲିତ ହୋଇଉଠିଲେ । ସେ କହିଲେ, "ଭଗବାନ୍ ଆମ ଛପର ଫାଡ଼ି ରତ୍ନଭଣ୍ଡାର ଅଜାଡ଼ିଦେଲେ ।"

"ଆନନ୍ଦରେ ଉତ୍‌ଫୁଲ୍ଲିତ ହେବା ଉଚିତ ନୁହେଁ ।"– ପଣ୍ଡିତ ମହାଶୟ ସ୍ୱାଭାବିକଭାବରେ ହଠାତ୍ କହିଉଠିଲେ । "ପ୍ରିୟ ବସ୍ତୁ ଲାଭ କରି ଯେ ହର୍ଷିତ ହୁଅନ୍ତି ନାହିଁ, ଭଗବାନ୍ ତାଙ୍କୁ ହିଁ ଭଲ ପାଆନ୍ତି ।"

× × × ×

"ଆମ୍ଭେମାନେ କ୍ଷମା ଭିକ୍ଷା କରୁଛୁ ।"– ସାନଭାଇ ତିନିଜଣଯାକ ଦିନେ ଆସି ଲଜ୍ଜିତ ସ୍ୱରରେ କହିଲେ ।

"ମୁଁ କାହା ପ୍ରତି ଦ୍ୱେଷ କରେ ନାହିଁ । ତୁମ୍ଭେମାନେ ତ ମୋର ଭାଇ, ମୋତେ ଲଜ୍ଜିତ କର ନାହିଁ ।"– ଗୀତାଭ୍ୟାସୀ ବଡ଼ ନମ୍ରତାପୂର୍ବକ ଉତ୍ତର ଦେଲେ ।

ସେମାନେ ବଡ଼ଭାଇଙ୍କ ଠାରୁ ଏପରି ପ୍ରେମପୂର୍ଣ୍ଣ ସମ୍ଭାଷଣ ଆଶା କରି ନ ଥିଲେ । ଜଣେ କହିଲେ, 'ଆପଣଙ୍କ ଠାରୁ ଭିନ୍ନେ ହୋଇଯିବା ପରେ ଆମର ସବୁବେଳେ କ୍ଷତି ଲାଗିରହିଛି । ଆମକୁ ଲକ୍ଷ୍ମୀ ଛାଡ଼ିଗଲେ । ଆମେ ଲକ୍ଷ୍ମୀଛଡ଼ା ହୋଇଯାଇଛୁ । ଆମେ ଋଣଗ୍ରସ୍ତ ହୋଇପଡିଛୁ । ଜୀବିକାନିର୍ବାହ ପାଇଁ, ଗ୍ରଉଳ ମୁଠିଏ ପାଇଁ ଆମେ ବାରଦ୍ୱାର ଶୁଣ୍ଢିପିଣ୍ଡା ହୋଇଗଲୁଣି । ଆମେ ଏବେ ସମାଜରେ ଅପମାନିତ ତଥା ଲାଂଛିତ ଜୀବନ କଟାଉଛୁ ।"

"ଆମ ଜୀବନ ଆମର ବୋଝ ହୋଇପଡ଼ିଛି, ଭାଇ !"–ଅନ୍ୟ ସାନ ଭାଇଟି କହିଲେ ।

"ଲାଜରେ ଆପଣଙ୍କ ପାଖକୁ ଆସୁ ନ ଥିଲୁ; କିନ୍ତୁ ବିପଦ ହିଁ ଆମକୁ ବାଧ୍ୟ କରି ଆପଣଙ୍କ ପାଖକୁ ପଠାଇଲା ।"– ତୃତୀୟ ସାନଭାଇଜଣକ କହିଲେ ।

"ଆପଣ ହେଉଛନ୍ତି ଆମର ସହୋଦର ଭାଇ ।" –ପୁଣି ପ୍ରଥମ ସାନଭାଇ ଜଣକ କହିଲେ ।

"ଆପଣ ହେଉଛନ୍ତି ପୁଣ୍ୟାତ୍ମା । ପ୍ରତିଦିନ ଦୀନ-ଦୁଃଖୀମାନଙ୍କୁ କେତେ କେତେ ଧନ ମୁକ୍ତହସ୍ତରେ ବିତରଣ କରୁଛନ୍ତି । ଆମ୍ଭେମାନେ ତ ଆପଣଙ୍କର ସାନଭାଇ ; ଆମକୁ କ୍ଷମା କରନ୍ତୁ ।"–ଦ୍ୱିତୀୟ ସାନଭାଇଜଣକ ଦୀନଭାବରେ ପ୍ରାର୍ଥନା କରି କହିଲେ ।

"ଏହି ରତ୍ନ ଓ ସ୍ୱର୍ଣ୍ଣମୁଦ୍ରା ଆପଣମାନେ ନେଇଯାଆନ୍ତୁ ।" ଗୀତାଭ୍ୟାସୀ ପଣ୍ଡିତ ମହାଶୟଙ୍କ ପତ୍ନୀ ତିନିଜଣଯାକ ଦିଅରଙ୍କର କରୁଣ ବଚନ ଶୁଣି ଦୟାର୍ଦ୍ରହୃଦୟ ହୋଇଯାଇଥିଲେ । କିଛି ରତ୍ନ ଓ ସୁନାମୋହର ଆଣି, ସେମାନଙ୍କୁ ଦେଇ କହିଲେ, "ଆମକୁ ତ ଭଗବାନ୍ ଛପର ଫାଡ଼ି ଦେଇଯାଇଛନ୍ତି; ଆହୁରି ବି ଦେଇଯିବେ ।"

"ଭଗବାନ୍ ଆମକୁ ପୁଣି ଦେଇଯିବେ'– ତୁମେ ଏପରି ଆକାଂକ୍ଷା କରିବା ଉଚିତ ନୁହେଁ ।" – ନିଜ ପତ୍ନୀଙ୍କୁ ସମ୍ବୋଧନ କରି ପଣ୍ଡିତ ମହାଶୟ କହିଲେ । 'ଆକାଂକ୍ଷାରହିତ ପୁରୁଷ ହିଁ ଭଗବାନଙ୍କର ପ୍ରିୟପାତ୍ର ହୋଇଥାଆନ୍ତି ।'

"ଅପରାଧ ନିମନ୍ତେ କ୍ଷମା ଗ୍ରହୁଁଛି"– ପତ୍ନୀ ନିଜର ଭୁଲ ସ୍ୱୀକାର କରି କହିଲେ ।

"ଭାଇ ! ଆପଣ ଆମ୍ଭମାନଙ୍କୁ ଆପଣଙ୍କ ସହିତ ଏକାଠି ରଖନ୍ତୁ ।"– ଜଣେ ସାନଭାଇ ପ୍ରାର୍ଥନା କଲେ ।

"ହଁ ଭାଇ ! ବଡ଼ କୃପା ହେବ ଆପଣଙ୍କର ।"– ଅନ୍ୟ ଜଣେ ସାନଭାଇ ମଧ୍ୟ ଆଗ୍ରହ ପ୍ରକାଶ କରି କହିଲେ ।

"ଆପଣଙ୍କ କୃପାରୁ ଆମେ ଋଣମୁକ୍ତ ହୋଇଯିବୁ, ଆମର ସମସ୍ତ ଦୁଃଖ ଦୂର ହୋଇଯିବ, ଭାଇ!"–ତୃତୀୟ ଭାଇଜଣକ ମଧ୍ୟ ଅନୁରୋଧ କଲେ ।

***ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଂକ୍ଷତି ।***
***ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ ॥***

ଗୀତାଭ୍ୟାସ କରୁଥିବା ପଣ୍ଡିତ ତାଙ୍କର ପ୍ରାଣୋପମ ସେହି ପ୍ରାଚୀନ ଶ୍ଳୋକ ପୁନରାବୃତ୍ତି କରି କହିଲେ, "ତୁମ୍ଭେମାନେ ମୋତେ ପୁନର୍ବାର ତୁମ୍ଭମାନଙ୍କ ସହିତ ସମ୍ମିଳିତ ହୋଇ ଏକତ୍ର ଚଳିବାକୁ ଇଚ୍ଛୁକ ତ, ସେଥିରେ ମୋର କୌଣସି ଆପତ୍ତି ନାହିଁ, କି ହର୍ଷ ମଧ୍ୟ ନାହିଁ ।ଯଦି ତୁମ୍ଭେମାନେ ମୋତେ ପୁଣିଥରେ ଭିନ୍ନେ କରିଦିଅ, ତଥାପି ମୋର ଶୋକ ନାହିଁ, କି ତୁମ୍ଭମାନଙ୍କ ପ୍ରତି ଦ୍ୱେଷ ମଧ୍ୟ ରଖିବି ନାହିଁ; କାରଣ ହର୍ଷ, ଦ୍ୱେଷ, ଶୋକ, ଆକାଂକ୍ଷା ତଥା କି ଶୁଭ, କି ଅଶୁଭ ସକଳ କର୍ମର ତ୍ୟାଗୀ ପୁରଷ ହିଁ ଭବବାନଙ୍କର ପ୍ରକୃତ ପ୍ରେମୀ ବୋଲି ବିବେଚିତ ହୁଅନ୍ତି ।"

"ଆପଣ ପଦାର୍ପଣ କରିବାମାତ୍ରେ ଆପଣଙ୍କ କୃପାରୁ ବନ୍ଧକ ପଡ଼ିଥିବା ଆମ ଘର ଓ ଘରର ସକଳ ଆସବାବପତ୍ର, ସବୁ ବ୍ୟବହାର୍ଯ୍ୟ ସାମଗ୍ରୀ ବନ୍ଧକମୁକ୍ତ ହୋଇଗଲା ଏବଂ ଆମେ ସେସବୁ ଫେରିପାଇଲୁ । ଆମେ ବର୍ତ୍ତମାନ ଋଣମୁକ୍ତ ।" ଚାରିଭାଇ ଏକତ୍ର ଅବସ୍ଥାନ କରିବା ପରେ ଦିନେ ସବୁଠାରୁ ସାନଭାଇଜଣକ କହିଲେ , "ଆମେ ବର୍ତ୍ତମାନ ଆନନ୍ଦରେ ଜୀବନ ଯାପନ କରୁଛୁ ।"

"ଲକ୍ଷ୍ମୀଦେବୀଙ୍କର ଆମ ଉପରେ ବର୍ତ୍ତମାନ ଅସୀମ କୃପା ।" ଅନ୍ୟ ଜଣେ ସାନଭାଇ କହିଲେ । **'ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି......'** ଶ୍ଳୋକଟି ଗାନ କରି କରି ଗୀତାଭ୍ୟାସୀ ପଣ୍ଡିତଙ୍କର ପତ୍ନୀ ଆସି କହିଲେ– "ଚାଲନ୍ତୁ, ଭୋଜନ ପ୍ରସ୍ତୁତ ହୋଇଗଲାଣି ।"

ଭୋଜନ କରିବା ନିମନ୍ତେ ଉଦ୍ୟତ ହେଉ ହେଉ ତୃତୀୟ ସାନଭାଇଜଣକ କହିଲେ, "ଆଜିଠାରୁ ଭାଇ ଓ ଭାଉଜଙ୍କ ପରି ଆମ୍ଭେମାନେ ମଧ୍ୟ ପ୍ରତ୍ୟହ ନିୟମିତ ଗୀତାପାଠ ଅଭ୍ୟାସ କରିବୁ ।"

"ଗୀତାର ଜ୍ଞାନୋପଦେଶ ଅନୁସାରେ ଆମ ଜୀବନ ଗଠନ କରିବାକୁ ଆମେ ପୂର୍ଣ୍ଣପ୍ରାଣରେ ନିଷ୍ଠାପୂର୍ବକ ବିଶେଷ ଯତ୍ନଶୀଳ ହେବୁ ।"– ସବୁଠାରୁ ସାନଭାଇଜଣକ କହିଲେ ।

"ତା'ହେଲେ ତ ଆମ ଘର ଭଗବାନଙ୍କର ମନ୍ଦିର ପାଲଟିଯିବ ।"– ଅନ୍ୟ ସାନଭାଇଜଣକ କହିଲେ । "ପ୍ରଭୁଙ୍କ କୃପାରୁ ସେହିପରି ହେଉ ।"– ମନ୍ଦହାସ୍ୟ କରି, ଗୀତାଭ୍ୟାସୀ ବଡ଼ ଭାଇ ଏହା କହି ପ୍ରଭୁଙ୍କ ନିକଟରେ ଭକ୍ତିପୂତ ବିନମ୍ର ପ୍ରଣାମ କରିବାପୂର୍ବକ କୃତଜ୍ଞତା ଜ୍ଞାପନ କଲେ ।

(ନିବୃତ୍ତିମୂଳକ ସ୍ୱଭାବକୁ ଆଧାର କରି ଏହି ଗାଥା ଲିଖିତ ହୋଇଛି । ଏହି ଶ୍ଳୋକର ଅର୍ଥ ପ୍ରବୃତ୍ତିମୂଳକ ମଧ୍ୟ ହୋଇଥାଏ ଏବଂ ଏହିପ୍ରକାରେ ପ୍ରତ୍ୟେକ କର୍ମତତ୍ପର ଭକ୍ତଙ୍କ ନିମନ୍ତେ ଏହି ଶ୍ଳୋକଟି ଗୋଟିଏ ଅତି ସୁନ୍ଦର ଆଦର୍ଶ ।)

***ହରି ଓଁ ତତ୍ ସତ୍***

~~ O ~~

# ୯. ପରମାନନ୍ଦ କର୍ଷଣ

''ଭାଇ ! ଏତେ ଦୂର ଆଗମନର କାରଣ କ'ଣ ?''– ସ୍ୱାଗତ ଜଣାଇ ପଞ୍ଜାବନିବାସୀ ବନ୍ଧୁଜଣକ ପଚ୍ଚାରିଲେ । ରାଜପୁତାନାରୁ ପଞ୍ଜାବ ଆସିବାର କୌଣସି ବିଶେଷ କାରଣ ନିଶ୍ଚୟ ଥିବ ବୋଲି ସେ ଅନୁମାନ କରିସାରିଥିଲେ ।

''ଆମର ସେଠାରେ ଦୁର୍ଭିକ୍ଷ ପଡ଼ିଛି । ଲୋକମାନେ ମୁଠେ ଖାଦ୍ୟ ପାଇବାକୁ ବ୍ୟାକୁଳ ହୋଇ ଦ୍ୱାର ଦ୍ୱାର ବୁଲିବାରେ ଲାଗିଛନ୍ତି । କେତେ ଲୋକ ଖାଇବାକୁ ନ ପାଇ ଭୋକରେ ଛଟପଟ ହୋଇ ମୃତ୍ୟୁବରଣ କରୁଛନ୍ତି । ଅତ୍ୟନ୍ତ ବ୍ୟାକୁଳ ହୋଇ ପରିବାର ସହିତ ମୁଁ ଆପଣଙ୍କ ନିକଟକୁ ପଳାଇଆସିଛି ।''– ରାଜପୁତନାରୁ ଆସିଥିବା ବ୍ୟବସାୟୀଜଣଙ୍କ ନିଜ ବନ୍ଧୁଙ୍କୁ ସତକଥାଟି ଜଣାଇଦେଲେ । ନିଜ ମିତ୍ରଙ୍କ ଘରେ ପ୍ରଚୁର ଖାଦ୍ୟଶସ୍ୟ ଗଦା ହୋଇଥିବାର ଦେଖି ସେ ମନେ ମନେ ବଡ଼ ଖୁସୀ ହେଉଥିଲେ ।

''ଆପଣ ଏଠାକୁ ଆସିଯାଇଛନ୍ତି, ଖୁବ୍ ଭଲ କରିଛନ୍ତି । ଏ ଘର ତ ଆପଣଙ୍କ ଘର; ଏଠାରେ ଆନନ୍ଦପୂର୍ବକ ନିଶ୍ଚିନ୍ତରେ ରହନ୍ତୁ ।''– ବ୍ୟବସାୟୀଙ୍କ ମିତ୍ର ଅତ୍ୟନ୍ତ ପ୍ରେମପୂର୍ବକ ଉତ୍ତର ଦେଇ କହିଲେ ।

''ଆପଣଙ୍କର ଏଠାରେ ତ ପ୍ରଚୁର ଖାଦ୍ୟଶସ୍ୟ ଗଦା ହୋଇଛି ; ଆମ ଦେଶରେ ତ ଆଜିକାଲି ଅଳ୍ପ କେତେଜଣ ଭାଗ୍ୟଶାଳୀ ବ୍ୟକ୍ତିଙ୍କୁ ହିଁ ଖାଦ୍ୟଶସ୍ୟ ମିଳୁଛି ; ସେଠାରେ ତ ମୁଠାଏ ଖାଦ୍ୟ ପାଇଁ ଚିଲକୁଆଙ୍କ ପରି ଛଡା-ଛଡି, ଗଡା-ଗଡି, ଟଣା-ଓଟରା, ମାରପିଟ୍, ବାଡିଆ-ବାଡେଇ ଲାଗିଛି । ଆପଣଙ୍କ ଏଠାରେ ହଜାର ହଜାର କ୍ୱିଣ୍ଟାଲ ନାହିଁ ନ ଥିବା ପ୍ରଚୁର ଖାଦ୍ୟଶସ୍ୟ ଗଦା ହୋଇଥିବାର ଦେଖି ମୋ ଦେହରେ ପ୍ରାଣ ପଶିଗଲା ।'' ରାଜପୁତନାର ବ୍ୟବସାୟୀଜଣକ ନିଜ ଅବସ୍ଥା ସ୍ପଷ୍ଟରୂପେ ପ୍ରକାଶ କରିଦେଲେ ।

''ଏଠାରେ ତ ଭଗବାନଙ୍କ କୃପାରୁ ଅନ୍ନର ଅଭାବ ନାହିଁ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏଠାକୁ ଯେ କେହି ଆସନ୍ତୁ ନା କାହିଁକି, ତାଙ୍କ ପାଇଁ ଖାଦ୍ୟଶସ୍ୟର ଅଭାବ ନାହିଁ । ଆପଣ ତ ମୋର ମିତ୍ର ; ଏଠାରେ ଯାହାକିଛି ଅଛି, ସେସବୁ ଆପଣଙ୍କର । ଏଠାକୁ ଆସି ଆପଣ ଖୁବ୍ ଭଲ କରିଛନ୍ତି ।'' ମିତ୍ରଜଣକ କହିଲେ । ସେ ଥିଲେ ଜଣେ ସୁଦକ୍ଷ ଓ ଅନୁଭବୀ କୃଷକ ।

''ସକଳ ବସ୍ତୁ ଆମର ବୋଲି ଆପଣ ଯାହା କହିଲେ, ତାହା ତ ସ୍ୱାଗତଯୋଗ୍ୟ ; ସେଥିରେ କୌଣସି ସନ୍ଦେହ ନାହିଁ ; କିନ୍ତୁ ମୁଁ ଜାଣିବାକୁ ଉତ୍ସୁକ ଯେ, ଆପଣ ଏତେ ଖାଦ୍ୟଶସ୍ୟର ଅଧିକାରୀ ହୋଇପାରିଲେ କିପରି ?''– ବ୍ୟବସାୟୀ ବନ୍ଧୁଜଣକ ବିସ୍ମିତ ହୋଇ ପଚ୍ଚାରିଲେ ।

"ଆମର ଏଠାରେ ପ୍ରାୟ ବର୍ଷର ସବୁଦିନେ ଗୃଷକାମ ଲାଗିରହିଥାଏ । ଏପରି କୌଣସି ଗୋଟିଏ ଦିନ ବି ନାହିଁ, ଯେଉଁଦିନ କି ଗୃଷକାମ ହୁଏ ନାହିଁ । ଏସବୁ ହେଉଛି ତାହାରି ପ୍ରଭାବ ।"– କୃଷକ ବନ୍ଧୁଜଣକ ବ୍ୟବସାୟୀ ବନ୍ଧୁଙ୍କ ଜିଜ୍ଞାସା ସମାଧାନ କରିବାକୁ ଯାଇ କହିଲେ । "ଯଦି ଆପଣ ବି କୃଷିକାର୍ଯ୍ୟ କରିବାରେ ଲାଗିପଡନ୍ତି, ତେବେ ଆପଣଙ୍କ ନିକଟରେ ମଧ୍ୟ ପ୍ରଚୁର ଖାଦ୍ୟଶସ୍ୟ ମହଜୁଦ ହୋଇ ରହିପାରିବ ।"

"ଖୁବ୍ ଭଲ କଥା ; ମୁଁ ମଧ୍ୟ ଗୃଷକାର୍ଯ୍ୟରେ ଲାଗିଯିବି । କିନ୍ତୁ ମୋର ତ ଏ ବିଷୟରେ ଆଦୌ ଅଭିଜ୍ଞତା ନାହିଁ । ମୁଁ ତ ଗୃଷକାର୍ଯ୍ୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ମୋ ପାଖରେ ହଜାରେଟି ଟଙ୍କା ଅଛି । ଏତିକିରେ କ'ଣ ଗୃଷକାମ ଆରମ୍ଭ ହୋଇପାରିବ ?" – ବ୍ୟବସାୟୀଜଣକ ପଗ୍ଚରିଲେ ।

"ହଜାରେ ଟଙ୍କା ମୂଳଧନ କିଛି କମ୍ ନୁହଁ । ଏତିକି ଟଙ୍କାରେ ଆପଣ ଗୃଷକାମ ଖୁବ୍ ଭଲଭାବରେ ଆରମ୍ଭ କରିପାରିବେ । ମୁଁ ଆପଣଙ୍କୁ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରିବି ।" – କୃଷକଜଣକ ସହାନୁଭୂତିସୂଚକ ଆଶ୍ୱାସନା ଦେଇ ବ୍ୟବସାୟୀ ମିତ୍ରଙ୍କୁ କହିଲେ ।

"ମୁଁ ତ ଏ ବିଷୟରେ ସଂପୂର୍ଣ୍ଣ ଅଜ୍ଞ । ମୋର ଏ ବିଷୟରେ ମୋଟେ ଜ୍ଞାନ ନାହିଁ । ଗୃଷକାମ ବିଷୟରେ ମୁଁ କିଛି ଜାଣେ ନାହିଁ । ଆପଣ ଯାହା ଉଚିତ ବୋଲି ଭାବୁଛନ୍ତି, ତାହା କରନ୍ତୁ ।" – ନିଜ ପାଖରେ ଥିବା ସମସ୍ତ ଟଙ୍କା କୃଷକବନ୍ଧୁଙ୍କ ହାତକୁ ବଢାଇଦେଇ ବ୍ୟବସାୟୀଜଣକ ଉତ୍ତର ଦେଲେ ।

× × × ×

"ଦେଖନ୍ତୁ, ଏ ଗହମଯାକ ତ ମାଟିରେ ମିଶିଗଲା । ସବୁଯାକ ଗହମ ଦାନା ମାଟିରେ ପୋତିହୋଇ ନଷ୍ଟ ହୋଇଗଲା ।"– ଅତ୍ୟନ୍ତ ନିରାଶ ହୋଇ ବ୍ୟବସାୟୀଜଣକ କହିଲେ । ସେ ନିଜ ପଞ୍ଜାବୀ କୃଷକବନ୍ଧୁଙ୍କର କୌଣସି କାର୍ଯ୍ୟରେ ବାଧା ଦେଇ ନ ଥିଲେ । କୃଷକଜଣକ ମିତ୍ରଙ୍କର ଟଙ୍କାରେ ବିହନ ଇତ୍ୟାଦିର ବ୍ୟବସ୍ଥା କରାଇ ଜମି ଗୃଷ କରାଇଦେଲେ ; ବିହନ ବୁଣିଦେଲେ । କିନ୍ତୁ ଅନଭିଜ୍ଞ ବ୍ୟବସାୟୀଜଣକ ଏସବୁ ଦେଖି ଚିନ୍ତାମଗ୍ନ ହୋଇଯାଇଥିଲେ । ବିହନ ବୁଣିଦେଇ ଆସିବାର ଦୁଇତିନିଦିନ ଯାଇଛି କି ନାହିଁ, ସେ ବିଲକୁ ଯାଇ ମାଟି ଖୋଳି ଗହମ ଦାନା ଦେଖିବାକୁ ଲାଗିଲେ । ସେ ଦେଖିଲେ, ବହୁତ ମଞ୍ଜିରୁ (ବିହନରୁ) ଗଜା ବାହାରିଛି । ଏହା ଦେଖି ସେ ଭାବିଲେ, ତାଙ୍କର ଟଙ୍କାଯାକ ମାଟିରେ ମିଶିଗଲା । ଅତ୍ୟନ୍ତ ଦୁଃଖିତ ହୋଇ ସେ ନିଜ ମିତ୍ରଙ୍କୁ ଏ କଥା କହିଲେ ।

"ଆପଣଙ୍କ ଜମିରେ ଗଜା ବାହାରିବା ଆରମ୍ଭ ହୋଇଗଲାଣି । ଆପଣ କୌଣସି ଚିନ୍ତା କରନ୍ତୁ ନାହିଁ । ଏ ବିହନଗୁଡ଼ିକ ଖୁବ୍ ଭଲ । ଆପଣଙ୍କର ଏ

ବିଷୟରେ ଧାରଣା ନାହିଁ ।''– କୃଷକବନ୍ଧୁଜଣକ ବ୍ୟବସାୟୀବନ୍ଧୁଙ୍କୁ ଆଶ୍ୱାସନା ଦେଇ କହିଲେ ।

''ଏତେ ଟଙ୍କା ଖର୍ଚ୍ଚ କରି ଓ ଏତେ ପରିଶ୍ରମ କରିବା ପରେ ବି କେଉଁଠି କିଛି ଲାଭ ହେବା ପରି ତ ମୋତେ ଦେଖାଯାଉ ନାହିଁ । ଏଥିନେଇ ମୁଁ ବିଶେଷ ଚିନ୍ତିତ ।''– ବ୍ୟବସାୟୀଜଣକ ସ୍ୱଷ୍ଟରୂପେ ମନୋବ୍ୟଥା ପ୍ରକାଶ କରି କହିଲେ ।

''ଆରମ୍ଭରେ ଏପରି ହୋଇଥାଏ । ଆପଣ ନିଶ୍ଚିନ୍ତ ରହନ୍ତୁ । ଆପଣଙ୍କର ଗ୍ରଷ ଖୁବ୍ ଭଲ ହୋଇଛି ।'' କୃଷକବନ୍ଧୁଜଣକ ଅତ୍ୟନ୍ତ ପ୍ରେମପୂର୍ବକ ଉତ୍ତର ଦେଲେ ।

ବ୍ୟବସାୟୀଜଣକ ନୀରବ ରହିଲେ । ଏହା ଛଡ଼ା ତାଙ୍କର ବା ଆଉ କି ଉପାୟ ଥିଲା !

× × × ×

''ମୋ ବିଲରେ ତ ସବୁଆଡ଼େ ଖାଲି ଘାସ ଉଠିଥିବାର ଦେଖାଯାଉଛି । ମୋର ତ ବହୁତ କ୍ଷତି ହେଲା । ମୋର ଟଙ୍କାଯାକ ବୃଥା ନଷ୍ଟ ହୋଇଗଲା !''– ବ୍ୟବସାୟୀଜଣକ ଅଳ୍ପଦିନ ପରେ ପୁଣି କୃଷକବନ୍ଧୁଙ୍କୁ କହିଲେ । ଗ୍ରଖଣ୍ଡେ ଲେଖାଏଁ ହୋଇଥିବା ଛୋଟ ଗହମଗଛଗୁଡ଼ିକୁ ଦେଖି ସେ ଘାସ ବୋଲି ଭାବିଥିଲେ ।

ଏହା ଶୁଣି କୃଷକଜଣକ ମଧ୍ୟ ଚିନ୍ତିତ ହୋଇ ନିଜେ ବିଲକୁ ଗଲେ ; କିନ୍ତୁ ବିଲକୁ ଲକ୍ଷ୍ୟ କରି ସେ ଅତ୍ୟନ୍ତ ଆନନ୍ଦିତ ହେଲେ ।

''ଆରେ ! ଆପଣଙ୍କ ବିଲ ତ ଆଖପାଖର ସବୁ ବିଲଠାରୁ ଭଲ ହୋଇଛି !'' ବୋଲି କହି କୃଷକବନ୍ଧୁଜଣକ ହତୋତ୍ସାହ ହୋଇଥିବା ମିତ୍ରଙ୍କର ଭୁଲଧାରଣା ଦୂର କଲେ । ''ଆପଣ ଜାଣିରଖନ୍ତୁ ଯେ, ଏଥରକ ଆପଣଙ୍କ ନିକଟରେ ପ୍ରଚୁର ଗହମ ଗଦା ହୋଇଯିବ । କିନ୍ତୁ ଏକଥା ଭଲଭାବରେ ମନେରଖନ୍ତୁ ଯେ, ଗହମଗଛଗୁଡ଼ିକ ପାଣି ଅଭାବରୁ ଯେପରି ଶୁଖି ନ ଯାଏ । ଏହି କଅଁଳିଆ ଗହମଗଛଗୁଡ଼ିକର ଜୀବନ ହେଉଛି ପାଣି । ଆପଣ ଯଥାଶୀଘ୍ର ପାଣିର ସୁବ୍ୟବସ୍ଥା କରନ୍ତୁ । ଜଳସେଚନ ନିମନ୍ତେ ଆପଣ ଅତି ଶୀଘ୍ର ଗୋଟିଏ କୂଅ ଖୋଳାନ୍ତୁ । ତା' ସଙ୍ଗେ ସଙ୍ଗେ ବିଲର ଗ୍ରିଆଡ କଣ୍ଟାବାଡ଼ ବୁଜାଇ ଦିଅନ୍ତୁ ; ନଚେତ୍ ପଶୁମାନେ ପଶି ଫସଲ ନଷ୍ଟ କରିଦେବେ । ବିଲକୁ ଅତ୍ୟନ୍ତ ସାବଧାନ ହୋଇ ରକ୍ଷା କରିବାକୁ ହେବ ।''

''ଆପଣଙ୍କର ପ୍ରତ୍ୟେକ ଆଦେଶ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି ।'' ବ୍ୟବସାୟୀଜଣକ କହିଲେ ଏବଂ ତଦନୁଯାୟୀ କାର୍ଯ୍ୟ କଲେ । କୂଅ ଖୋଳାଇ ଖୁବ୍ ଭଲରୂପେ ଜଳସେଚନ କଲେ । ଭଗବତ୍‌କୃପାରୁ ମଝିରେ ମଝିରେ ବର୍ଷା ମଧ୍ୟ ହେଉଥାଏ । ଛୋଟ ଛୋଟ ଗହମ ଗଛଗୁଡ଼ିକ ବଢିବାକୁ ଲାଗିଲେ ।

× × × ×

''ଛୋଟ ଛୋଟ ଗହମଗଛଗୁଡ଼ିକ ମଝିରେ ଯେଉଁ ଘାସଗଛସବୁ ଉଠିଛି, ସେଗୁଡ଼ିକୁ ଗୋଟି ଗୋଟି କରି ବାଛି ଉପାଡ଼ିଦିଅନ୍ତୁ । ସେଗୁଡ଼ିକ ଗହମଗଛ ବଢ଼ିବାରେ ବାଧା ସୃଷ୍ଟି କରିବେ ।''– ଦିନେ ବିଲକୁ ଆସି କୃଷକଜଣକ ବ୍ୟବସାୟୀବନ୍ଧୁଙ୍କୁ ଉପଦେଶ ଦେଲେ ।

''ଠିକ୍ ଅଛି ; କିଆରିରେ ଗୋଟିଏ ବି ଘାସ ରହିବ ନାହିଁ ।''– ବ୍ୟବସାୟୀଜଣକ ଉତ୍ସାହପୂର୍ବକ ଉତ୍ତର ଦେଲେ ।

× × × ×

''ଗହମ ଦାନା ତ ବାହାରିଗଲା ; କିନ୍ତୁ ଏସବୁଗୁଡ଼ିକ ତ କଞ୍ଚା ।''– ମୁଣ୍ଡରୁ ଝାଳ ପୋଛୁ ପୋଛୁ ବ୍ୟବସାୟୀ ବନ୍ଧୁଟି କୃଷକବନ୍ଧୁଙ୍କୁ କହିଲେ । ସେ ବିଲରୁ ଧଇଁସଇଁ ହୋଇ ଦୌଡ଼ି ଆସିଥାନ୍ତି । ସେ ନିଜ କୃଷକମିତ୍ରଙ୍କ କଥା ଅନୁସାରେ ନିଜ ବିଲରେ ଗୋଟିଏ ହେଲେ ଘାସ ଛାଡ଼ି ନ ଥିଲେ ; ବିଲରୁ ସବୁ ଘାସ ବାଛିଦେଇ ସଫା କରିଦେଇଥିଲେ । ସେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଗହମ ଗଛରେ ବି ଭଲ ଗହମ ଦାନା ଫଳିଥାଏ । କିନ୍ତୁ ବର୍ତ୍ତମାନ ଦେଖିଲାବେଳକୁ ସବୁଯାକ ଗହମ କଞ୍ଚା ।ଏପର୍ଯ୍ୟନ୍ତ କୌଣସି ଗହମ ପାକଳ ହୋଇନି; ପାଚିନି । କୃଷିକାର୍ଯ୍ୟରେ ଅନଭିଜ୍ଞ ହୋଇଥିବା ହେତୁ ସେ ଗରିବ ବିଚରା ବଡ଼ ବ୍ୟସ୍ତ ହୋଇପଡ଼ିଲେ । ସେ ଭାବିବାକୁ ଲାଗିଲେ, ସେ ଯେଉଁ ମୁଣ୍ଡଝାଳ ତୁଣ୍ଡରେ ମାରି ଟଙ୍କା ସଞ୍ଚିଥିଲେ, ସେହି ସବୁଯାକ ଟଙ୍କା ସଙ୍ଗେ ସଙ୍ଗେ ଅକାରଣ ବୃଥା ହୋଇଗଲା । ନିଜେ ତୋଳି ଆଣିଥିବା ଦୁଇତିନି ପେଣ୍ଠା ଗହମଦାନା ମଧ୍ୟ ସେ କୃଷକବନ୍ଧୁଙ୍କ ଆଗରେ ରଖିଦେଲେ ।

''ଆପଣଙ୍କ ବିଲରେ ଫଳିଥିବା ଗହମଦାନା ତ ପୁଷ୍ଟ ହୋଇଆସିଲାଣି । ଏଗୁଡ଼ିକ ଅତି ଶୀଘ୍ର ପାଚିଯିବ । ଆଉ ଡେରି ଲାଗିବ ନାହିଁ । ଆପଣ ଆଉ ବ୍ୟସ୍ତ ହୁଅନ୍ତୁ ନାହିଁ । ଆଉ କିଛି ଚିନ୍ତା କରିବାର ଆବଶ୍ୟକତା ମଧ୍ୟ ନାହିଁ । ଆପଣ ନିଶ୍ଚିନ୍ତ ରହନ୍ତୁ । ଆପଣଙ୍କ ଘରେ ଏଥରକ ଗହମ ଓ ଭୁଷି ପାହାଡ ପରିମାଣରେ ଗଦା ହୋଇଯିବ ।'' ବଡ଼ ଖୁସିରେ କୃଷକମିତ୍ରଜଣକ ବ୍ୟବସାୟୀବନ୍ଧୁଙ୍କୁ କହିଲେ । ''କିନ୍ତୁ ବର୍ତ୍ତମାନ ମୁଁ ଗୋଟିଏ ବିଷୟ ପ୍ରତି ଆପଣଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରି ସତର୍କ କରାଇଦେଉଛି ଯେ, ଠିକ୍ ଏହି ଘଡିସନ୍ଧିବେଳେ ଚଢ଼େଇମାନେ ଆସି କଳରବ କରି ଗଛରୁ ଦାନାସବୁ ଖୁଣ୍ଟି ଖାଇଯାଆନ୍ତି । ସୁତରାଂ ଆପଣ ସେଥିପ୍ରତି ବିଶେଷ ସଜାଗ ରହି ଫସଲର ସୁରକ୍ଷା ନିମନ୍ତେ ସୁବ୍ୟବସ୍ଥା କରିବାକୁ ହେବ । ଚଢ଼େଇମାନଙ୍କ ଦାଉରୁ ଫସଲ ରକ୍ଷା କରିବା ସକାଶେ ବିଧିବଦ୍ଧ ବ୍ୟବସ୍ଥା ଗ୍ରହଣ ନ କଲେ, ଚଢେଇମାନେ ବିଲର ସବୁ ଫସଲ ନଷ୍ଟ କରିଦେବେ । ଏହା ଆପଣଙ୍କର ବିଶେଷ ଦାୟିତ୍ୱ । ଏଥିରେ ଅବହେଳା କରିବା ଉଚିତ ନୁହେଁ ।''

"ମୁଁ ଆପଣଙ୍କ ନିକଟରେ ବିଶେଷ କୃତଜ୍ଞ । ମୋର ଆନନ୍ଦ କହିଲେ ନ ସରେ । ମୋ ଘର ଗହମରେ ଭରପୂର ହୋଇଯିବ ।"– ବ୍ୟବସାୟୀଜଣକ ଆନନ୍ଦଭରା କଣ୍ଠରେ କୃଷକବନ୍ଧୁଙ୍କ ପାଖରେ କୃତଜ୍ଞତା ଜଣାଇଲେ ।

"ଏସବୁ ତ ଭଗବାନଙ୍କର କୃପା ଏବଂ ଆପଣଙ୍କ ପରିଶ୍ରମର ଫଳ । ଆପଣ ପକ୍ଷୀମାନଙ୍କର ମଧୁର କଳରବ ପ୍ରତି ଆକୃଷ୍ଟ ନ ହୋଇ ସେମାନଙ୍କୁ ଘଉଡ଼ାଇ ଦେବାଲାଗି ତତ୍ପର ଥିଲେ; ସେମାନଙ୍କୁ ବିଲରୁ ହୁରୁଡାଇ ଦେବା ନିମନ୍ତେ ଯତ୍‌ପରୋନାସ୍ତି ଉଦ୍ୟମ କରିବାରେ ଲାଗିଥିଲେ । ଆପଣ ଖୁବ୍ ତତ୍ପରତା, ନିପୁଣତା ଓ ନିଷ୍ଠାର ସହିତ ଗୃଷକାର୍ଯ୍ୟ କରିଥିଲେ ।"– କୃଷକଜଣକ ଏହା କହି ବ୍ୟବସାୟୀବନ୍ଧୁଙ୍କ କୃତିତ୍ୱର ପ୍ରଶଂସା କଲେ ।

ବ୍ୟବସାୟୀଜଣକ କୃତଜ୍ଞତାରେ ମୁଣ୍ଡ ନୁଆଁଇଦେଲେ । ତାଙ୍କ ମୁଖମଣ୍ଡଳରେ ଆନନ୍ଦର ଲହରୀ ଖେଳିଗଲା ; ପ୍ରସନ୍ନତାର ହାସ୍ୟ ଉଛୁଳି ପଡ଼ିଲା । ସେ ଆନନ୍ଦବିଭୋର ହୋଇ ଆତ୍ମହରା ହୋଇଗଲେ ।

ଏହି କାହାଣୀ ତ ଏକ ଦୃଷ୍ଟାନ୍ତରୂପେ କୁହାଯାଇଛି । ଏଥିରୁ ନିମ୍ନପ୍ରକାରେ ପାରମାର୍ଥିକ ଶିକ୍ଷା ଗ୍ରହଣ କରିବା ବାଞ୍ଛନୀୟ । ପ୍ରକୃତ ସୁଖପ୍ରାପ୍ତି ନିମନ୍ତେ ସାଧନାରତ ଜିଜ୍ଞାସୁ ସାଧକଙ୍କୁ ଏଠାରେ ଦୁର୍ଭିକ୍ଷପ୍ରପୀଡ଼ିତ ବ୍ୟବସାୟୀ ବୋଲି ଭାବିବା ଆବଶ୍ୟକ । ସାଧକଙ୍କର ସାଂସାରିକ ଦୁଃଖକଷ୍ଟର ଜ୍ୱାଳା ହେତୁ ଉତ୍ପନ୍ନ ପ୍ରକୃତ ସୁଖର ଗଭୀର ଆକାଙ୍‌କ୍ଷାକୁ ଦୁର୍ଭିକ୍ଷପ୍ରପୀଡିତ ବ୍ୟବସାୟୀଙ୍କର କ୍ଷୁଧାଜନିତ ଦୁଃସହ ଜ୍ୱାଳା ହେତୁ ଅନ୍ନର ଆବଶ୍ୟକତା ବୋଲି ବୁଝିବା ଉଚିତ । ଭଗବତ୍‌ସାକ୍ଷାତ୍‌କାରପ୍ରାପ୍ତ ଜୀବନ୍ମୁକ୍ତ ମହାପୁରୁଷଙ୍କୁ ପଞ୍ଜାବରେ ରହୁଥିବା ଉକ୍ତ ବ୍ୟବସାୟୀଙ୍କର କୃଷକବନ୍ଧୁ ବୋଲି ଜାଣିବା ଆବଶ୍ୟକ । ସେହି ବ୍ୟବସାୟୀଙ୍କର ରାଜପୁତନାରୁ ପଞ୍ଜାବ ଯିବାଟା ସାଧକଙ୍କର ନିଜଘରୁ ବାହାରି ଜୀବନ୍ମୁକ୍ତ ମହାପୁରୁଷଙ୍କ ଆଶ୍ରମକୁ ଯିବା କଥା ସୂଚାଇଦିଏ । ମିତ୍ରଙ୍କ ନିକଟକୁ ଯାଇ ବ୍ୟବସାୟୀ ନିଜର ଯେଉଁ ଦୁଃଖଦୁର୍ଦ୍ଦଶା କଥା ବଖାଣିଲେ, ତାହା ଜିଜ୍ଞାସୁ ସାଧକ ମହାପୁରୁଷଙ୍କ ନିକଟରେ ନିଜ ସଂସାରଜଞ୍ଜାଳଜନିତ ଦୁଃଖଦୁର୍ଦ୍ଦଶାର ବର୍ଣ୍ଣନା ବୋଲି ବୁଝିବାକୁ ହେବ । ବ୍ୟବସାୟୀ ଭାଇଜଣକ ତାଙ୍କ ମିତ୍ରଙ୍କୁ ଯେଉଁ ସମ୍ପୂର୍ଣ୍ଣ ମୂଳଧନ ସମର୍ପି ଦେଲେ, ତାହା ସାଧକଙ୍କର ନିଜ ମଣିଷଜୀବନର ଅବଶିଷ୍ଟ ସମୟତକ ମହାପୁରୁଷଙ୍କ ଚରଣରେ ନିବେଦନ କରିଦେବା ବୋଲି ବୁଝିବାକୁ ହେବ । ମିତ୍ରଙ୍କ କହିବା ଅନୁସାରେ ମୂଳଧନର ଯେଉଁ ଯଥୋଚିତ ଖର୍ଚ୍ଚ କରାଗଲା, ତାହା ମହାପୁରୁଷଙ୍କ ଆଜ୍ଞାନୁସାରେ ସମୟର ସଦୁପଯୋଗ କରିବାକୁ ବୁଝାଏ । କୃଷକବନ୍ଧୁ ଯେଉଁ ଜମି ଓ ବିହନର ବ୍ୟବସ୍ଥା କରାଇଦେଲେ, ତାହାକୁ ମହାପୁରୁଷଙ୍କର ସମୟ ସଦୁପଯୋଗ କରିବାର ଶିକ୍ଷାଦାନ ବୋଲି ବୁଝିବାକୁ ହେବ । ଗୃଷକାର୍ଯ୍ୟ ପାଇଁ

ନିଜର ସୁଖସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାକୁ ପରମାନନ୍ଦପ୍ରାପ୍ତି ପାଇଁ ବର୍ତ୍ତମାନର ସାଂସାରିକ ସୁଖ ତ୍ୟାଗ କରିବା ବୋଲି ବୁଝିବାକୁ ହେବ । ବିଲରେ ବିହନ ବୁଣିବାକୁ ମହାପୁରୁଷପ୍ରଦତ୍ତ ସାଧନାର ବୀଜମନ୍ତ୍ର ହୃଦୟରେ ଧାରଣ କରିବା ବୋଲି ଜାଣିବାକୁ ହେବ । କୃଷକାର୍ଯ୍ୟ କରିବାଦ୍ୱାରା ବିଲରେ ବିହନର ଅଙ୍କୁରୋଦ୍‌ଗମ ଦେଖି ନିଜର ଅଜ୍ଞତା ହେତୁ ଦୁଃଖ ଓ ନୈରାଶ୍ୟ ଅନୁଭବ ହେବାକୁ, ସାଧନାକାଳରେ ଉପୁଜୁଥିବା ନୈରାଶ୍ୟ ଓ ତଜ୍ଜନିତ କ୍ଳେଶ ବୋଲି ବୁଝିବା ଆବଶ୍ୟକ । ବ୍ୟବସାୟୀଙ୍କର ଭ୍ରମବଶତଃ ଛୋଟ ଛୋଟ ଗହମଗଛକୁ ଘାସ ବୋଲି ବୁଝିବାଟା, ସାଧନାକାଳରେ ସାଧନାରେ ଉନ୍ନତି ଘଟୁଥିଲେ ମଧ୍ୟ ଅଧିକ ପରିଶ୍ରମ ହେବାରୁ ତାକୁ ଭୁଲରେ ବୃଥା ବୋଲି ଭାବିବା ବିଷୟ ବୁଝାଏ । ମନ ଓ ଇନ୍ଦ୍ରିୟମାନଙ୍କର ସଂଯମକୁ ବାଡ଼ ବୋଲି ବୁଝିବା ଉଚିତ । ଆଧ୍ୟାତ୍ମିକ ବିଷୟକୁ ସାଂସାରିକ ସ୍ୱାର୍ଥପର ମନୁଷ୍ୟଙ୍କ କାର୍ଯ୍ୟରେ ପ୍ରୟୋଗ ନ କରିବା ହିଁ ପଶୁମାନଙ୍କ କବଳରୁ ଫସଲ ରକ୍ଷା କରିବା । କୂଅ ଖୋଳି ବିଲରେ ଜଳସେଚନ କରିବାରେ ଲାଗିରହିବାଟି ସାଧନାରେ ଲାଗି ରହିବାକୁ ବୁଝାଏ । ଭଗବାନଙ୍କର ଗୁଣ ଓ ପ୍ରଭାବ ସହିତ ତାଙ୍କ ସ୍ୱରୂପ ଧ୍ୟାନ ଓ ସତ୍‌ସଙ୍ଗ, ସ୍ୱାଧ୍ୟାୟକୁ ସ୍ୱତଃ ସତ୍‌ସଙ୍ଗ ପ୍ରାପ୍ତ ହେବା ଏବଂ ଧ୍ୟାନ ଅଭ୍ୟାସ ଚାଲୁଥିବାକୁ ଭଗବତ୍‌କୃପାରେ ଯଥାସମୟରେ ସ୍ୱତଃ ବର୍ଷା ହୁଏ ବୋଲି ବୁଝିବାକୁ ହେବ । ନିଜ ହୃଦୟରୁ ଦୁର୍ଗୁଣ ଓ ଦୁରାଗ୍ରହ ଦୂର କରିବାରେ ଲାଗି ରହିବା ହେଉଛି ଗହମ ଗଛ ଛାଡ଼ି ଅନ୍ୟାନ୍ୟ ଘାସଗଛଗୁଡ଼ିକୁ ବାଛିଦେବା । ପରମାତ୍ମାଙ୍କ ଧ୍ୟାନର ସ୍ଥିରତାକୁ ଗହମ ଫଳିବା ଏବଂ ସ୍ୱାର୍ଥପର ଲୋକଙ୍କ ଦ୍ୱାରା କରାଯାଉଥିବା ପ୍ରଶଂସା ଓ ଯଶୋଗାନକୁ ଗହମଦାନା ଖୁମ୍ପି ଖାଇଯିବା ପାଇଁ ଆସିଥିବା ପକ୍ଷୀମାନଙ୍କର କଳରବ ବୋଲି ବୁଝିବାକୁ ହେବ । ସାଧନା ପୂର୍ଣ୍ଣାଙ୍ଗ ହେବା ନିମନ୍ତେ ପ୍ରଶଂସା ଓ ଯଶୋଗାନ ତଥା ପ୍ରଶଂସା-ଯଶୋଗାନ କରୁଥିବା ସ୍ୱାର୍ଥପର ଲୋକଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରିବାକୁ ଏଠାରେ କ୍ଷେତର ଫସଲରକ୍ଷା ନିମନ୍ତେ ପକ୍ଷୀମାନଙ୍କୁ ହୁରୁଡ଼ାଇଦେବା ବୋଲି ବୁଝିବାକୁ ହେବ । ସଂପୂର୍ଣ୍ଣ ଦୁଃଖନିବୃତ୍ତି ଓ ପରମାନନ୍ଦସ୍ୱରୂପ ପରମାତ୍ମପ୍ରାପ୍ତିକୁ ଗହମସବୁ ପାଚିଗଲା ପରେ ତାହା ଆଣି ଘରେ ଗଦା କରିଦେବା ବୋଲି ବୁଝିବା ଆବଶ୍ୟକ ।

***ହରି ଓଁ ତତ୍‌ସତ୍***

~~ 0 ~~

# ୧୦. ସମତା ହିଁ ଅମୃତ ଓ ବିଷମତା ହିଁ ବିଷ

ରାଜପୁତନାର କୌଣସି ଏକ ଗ୍ରାମରେ ଜଣେ ଅତ୍ୟନ୍ତ ଗରିବ ବୈଶ୍ୟ ରହୁଥିଲେ । ଦୈବାତ୍ ସେଠାରେ ଥରେ ଭୀଷଣ ଦୁର୍ଭିକ୍ଷ ପଡ଼ିଲା । ଖାଦ୍ୟାଭାବରୁ ଲୋକମାନେ ଛଟପଟ ହୋଇ ମରିବାକୁ ଲାଗିଲେ । ଗରିବ ବୈଶ୍ୟଙ୍କ ଉପରକୁ ମଧ୍ୟ ବିପତ୍ତି ମାଡ଼ିଆସିଲା । ସେ ତ କଷ୍ଟେମଷ୍ଟେ କିଛିଦିନ ଚଳିଗଲେ । ଶେଷରେ ପରିବାରରେ ଭରଣପୋଷଣ ନିମନ୍ତେ ଅନ୍ୟ ଉପାୟ ନ ପାଇ କିଛିଦିନ ପାଇଁ ଯତ୍‌କିଞ୍ଚିତ୍ ବ୍ୟବସ୍ଥା କରିଦେବା ପରେ ନିଜେ ଘରୁ ବାହାରିପଡ଼ିଲେ । ତାଙ୍କ ପିଲାଦିନର ଜଣେ ଧର୍ମଭାଇ ଥାଆନ୍ତି । ସେ ଆସାମରେ ରହି ବେପାରବଣିଜ କରନ୍ତି । ସେ ଜଣେ ଥିଲାବାଲା ନାମଜାଦା ବ୍ୟକ୍ତି । ତାଙ୍କର ବିରାଟ ବ୍ୟବସାୟ ଚ୍ଲୁଥାଏ । ଗରିବ ବୈଶ୍ୟ ବିଚରାଙ୍କୁ ସେହି ବାଲ୍ୟବନ୍ଧୁଙ୍କ କଥା ମନେପଡ଼ିଗଲା । ***'ବିପତି କାଲ କର ସତଗୁନ ନେହା'***– *''ବିପଦକାଳରେ ଶତଗୁଣ ସ୍ନେହ କରି, ସାନ୍ତ୍ୱନା ଦିଅଇ ବନ୍ଧୁ ମିତ୍ରଭାବ ଧରି''*– ମିତ୍ରଙ୍କର ଏହି ଲକ୍ଷଣ ମନେପକାଇ ସେ କୌଣସିପ୍ରକାରେ ଯାଇ ଆସାମରେ ପହଞ୍ଚିଗଲେ । ମିତ୍ରଙ୍କର ବ୍ୟବସାୟ ଯେଉଁଠାରେ ଚ୍ଲୁଥାଏ, ସେଠାକୁ ଯାଇ ସେ ମିତ୍ରଙ୍କ ସହିତ ସାକ୍ଷାତ୍ କଲେ । ତାଙ୍କର ପୂର୍ଣ୍ଣ ବିଶ୍ୱାସ ରହିଥାଏ ଯେ, ମିତ୍ରଙ୍କ ଠାରୁ ତାଙ୍କୁ ସ୍ୱାଭାବିକ ଆଦରସତ୍କାର ମିଳିବ ଏବଂ ତାଙ୍କର ଦୁଃଖ ଦୂର ହୋଇ ସେ ସୁଖରେ କାଳାତିପାତ କରିବେ । ମିତ୍ରଜଣଙ୍କ ତାଙ୍କର ସ୍ୱାଗତ କଲେ ସତ ; କିନ୍ତୁ ତାଙ୍କ ମୁହଁରେ ପ୍ରସନ୍ନତା ପରିବର୍ତ୍ତେ ଟିକିଏ ବିରକ୍ତି ଓ ମୁଣ୍ଡକୁ ବୋଝ ଆସିଯିବା ପରି ଟିକିଏ ଉଦାସଭାବର ରେଖାପାତ ହେବାର ଜଣାପଡ଼ିଲା । ଗରିବ ବୈଶ୍ୟ ବିଚରା ତ ଦୁଃଖିତ ଥିଲେ । ସେ ସଂକ୍ଷେପରେ ବଡ଼ କରୁଣ କଣ୍ଠରେ ନିଜର ସାରା କାହାଣୀ ଶୁଣାଇ ଆଶ୍ରୟ ଭିକ୍ଷା କଲେ । କହିଲେ– ''ଭାଇ ସାହେବ ! ଘରେ ଆପଣଙ୍କ ଭାଉଜ ଓ ପିଲାମାନେ ଭୋକରେ ଛଟପଟ ହେଉଥିବେ ; ସେମାନଙ୍କ ଖର୍ଚ୍ଚ ପାଇଁ ଆଜି ହିଁ କିଛି ଟଙ୍କା ପଠାଇବା ନିତାନ୍ତ ଆବଶ୍ୟକ । ଆଉ ତା' ସଙ୍ଗେ ସଙ୍ଗେ ମୋ ପାଇଁ ବି କିଛି କାମଧନ୍ଦାର ବ୍ୟବସ୍ଥା କରାଇଦେବା ଆବଶ୍ୟକ; ତା'ହେଲେ ମୋର ଏ ଦୁଃଖର ଦିନ ଦୂର ହୋଇଯିବ ଏବଂ ପ୍ରତିମାସରେ ପିଲାଙ୍କ ଚଳିବା ପାଇଁ ମୁଁ କିଛି ପଠାଇପାରିବି ।''

ଧନିକ ମିତ୍ର ଦୀର୍ଘନିଃଶ୍ୱାସ ମାରି କହିଲେ, ‘‘ଭାଇ ସାହେବ ! କଥା ତ ପୂରା ଠିକ୍ । ଏ ସମୟରେ ମୁଁ ମଧ୍ୟ ଆପଣଙ୍କର କିଛି ସେବା କରିବା ଉଚିତ ; କିନ୍ତୁ ବର୍ତ୍ତମାନ ମୋର ଏଠାରେ ସେପରି କିଛି ଆମଦାନୀ ହେଉନାହିଁ, ଯାହାଫଳରେ କି ମୁଁ ଆପଣଙ୍କୁ କିଛି ସାହାଯ୍ୟ କରିପାରିବି ; ଆପଣଙ୍କୁ ଦେଇପାରିବା ଭଳି କୌଣସି କାମ ମଧ୍ୟ ଆଜିକାଲି ନାହିଁ । ମୂଳଧନର ସୁଧ, ଘରଭଡ଼ା ଓ ବ୍ୟବସାୟରୁ ହେଉଥିବା ଆୟ ବାବଦରେ ସବୁ ମିଶାଇ ମୋଟରେ ପ୍ରାୟ ଚାଳିଶ-ପଚାଶ ହଜାର ଟଙ୍କା ଆସୁଥିବ । ଆପଣ ତ ଜାଣନ୍ତି, ଆଜିକାଲି ବଡ଼ ମହଙ୍ଗା ସମୟ, ଆଉ ନିଜ ସମ୍ମାନ ଓ ମର୍ଯାଦାକୁ ଜଗି ଖର୍ଚ୍ଚ ମଧ୍ୟ କରିବାକୁ ପଡୁଛି । ପରିବାର ଅଛନ୍ତି; ଗୁମାସ୍ତା ଇତ୍ୟାଦି ଅଛନ୍ତି । ବଡ଼ କଷ୍ଟରେ କାମ ଚଳୁଛି । ତେଣୁ କୁହନ୍ତୁ, ଆପଣ ଓ ଆପଣଙ୍କ ପରିବାରର ଭରଣ-ପୋଷଣ କରିବାର ଶକ୍ତି ମୋର କାହିଁ ? ମୋତେ ବଡ଼ ଦୁଃଖ ଲାଗୁଛି ; କିନ୍ତୁ କ'ଣ କରିବି ! ପରିସ୍ଥିତିରେ ପଡ଼ି ବାଧ୍ୟ ହୋଇ କହିବାକୁ ପଡୁଛି ଯେ, ବର୍ତ୍ତମାନ ମୋ ଦ୍ୱାରା କିଛି ହୋଇପାରିବ ନାହିଁ । ମୁଁ କୌଣସିପ୍ରକାରେ କିଛି ବି ସାହାଯ୍ୟ କରିବା ଅବସ୍ଥାରେ ନାହିଁ । ଆପଣ ଅନ୍ୟ କୌଣସି ରାସ୍ତା ଦେଖନ୍ତୁ ।’’

ଗରିବ ବୈଶ୍ୟ ବିଚରା ଦୁଃଖିତ ହୋଇ କହିଲେ, ‘‘ଭାଇ ସାହେବ ! ସତ କହିବାକୁ ଗଲେ, ମୁଁ ତ ଏଠାରେ ଆଉ କାହାକୁ ଜାଣିନାହିଁ, କି ଚିହ୍ନି ନାହିଁ । କେବଳ ଆପଣଙ୍କ ଭରସାରେ ହିଁ ଏଠାକୁ ଆସିଛି । ମୋ ଖର୍ଚ୍ଚ ବାବଦକୁ ବି ବେଶୀ କିଛି ଲୋଡ଼ା ନାହିଁ । ଏହିକ୍ଷଣି ରାଜପୁତନାକୁ ପଠାଇବା ପାଇଁ ପଚାଶଟି ଟଙ୍କା ଦରକାର । ଆଉ ମାସକୁ ପଚାଶଷାଠିଏ ଟଙ୍କା ମଜୁରୀର କାମ ଖଣ୍ଡେ ମିଳିଗଲେ ମୋର କାମ ଚଳିଯିବ । ବାସ୍, ଏତକ ହୋଇଗଲେ ମୋ ନିଜର ଖର୍ଚ୍ଚ ଚଳିଯିବ ଏବଂ ଯାହା ବଳିବ, ତାହା ପିଲାଙ୍କ ପାଇଁ ପଠାଇଦେବି । ଯେଉଁଠି ପଚାଶ ହଜାର ଟଙ୍କା ଆୟ ହେଉଛି, ସେଠାରେ ଏହି ସାମାନ୍ୟ ବ୍ୟୟ ଆପଣଙ୍କୁ କିଛିମାତ୍ର ଜଣାପଡ଼ିବ ନାହିଁ । ଆଉ ମୁଁ ତ କାମ କରି ମଜୁରି ପଇସା ନେବାକୁ ଚାହୁଁଛି ।’’ ଏହିପରି କହୁ କହୁ ତାଙ୍କ ଆଖିରୁ ଲୁହ ବୋହି ଆସିଲା । ମିତ୍ରଙ୍କର ଏ ଦୁରାବସ୍ଥା ଦେଖି ମଧ୍ୟ ସେହି ଧନୀଲୋକଙ୍କ ହୃଦୟ ଟିକିଏ ତରଳିଲା ନାହିଁ । ସେ ପୁନର୍ବାର ମିଛଟାରେ ବିନୟର ଅଭିନୟ କରି କହିଲେ, ‘‘ଭାଇ ସାହେବ ! ଆପଣ ଯାହା କହୁଛନ୍ତି, ତାହା ଯଥାର୍ଥ ; କିନ୍ତୁ ମୁଁ ସମ୍ପୂର୍ଣ୍ଣ ନିରୁପାୟ । ଆପଣଙ୍କୁ ଅନ୍ୟ କୌଣସି ଉପାୟ ଖୋଜିବାକୁ ପଡ଼ିବ । ‘‘ହଁ, କୌଣସି କାମଧନ୍ଦା ଯୋଗାଡ଼ ନ ହେବା ପର୍ଯ୍ୟନ୍ତ ଦୁଇଚାରିଦିନ ପାଇଁ ଆପଣ ଏଠାରେ ମୋ ପାଖରେ

ରହିଯାଆନ୍ତୁ । ଆମ ଘରେ ଖାଇବାପିଇବା କରନ୍ତୁ । ଯାଆନ୍ତୁ, ଗାଧୁଆପାଧୁଆ କାମ ସାରିଦିଅନ୍ତୁ । ରୋଷେଇ ବୋଧହୁଏ ସରିଗଲାଣି ।'' ଏତକ କହି ଧନିକ ମିତ୍ରଟି ନିଜ କାର୍ଯ୍ୟରେ ଲାଗିଗଲେ । ଗରିବ ବୈଶ୍ୟ ବିଚରା ମନରେ କ'ଣ ଭାବିଲେ, କିଏ ଜାଣେ; ଗାଧୁଆପାଧୁଆ କରିବାକୁ ଗଲେ ।

ଧନିକ ମିତ୍ରଜଣକ ତ ଥିଲେ ରୁକ୍ଷ ଓ କୃପଣ ସ୍ୱଭାବର ; ତାଙ୍କ ପତ୍ନୀ ଥିଲେ ତାଙ୍କ ଠାରୁ ବି ବେଶୀ । ସେ ବଡ଼ ଅସହିଷ୍ଣୁ । ଆଉ କାହା କଥା ପଡ଼ିଲେ ତାଙ୍କ ନାହି ଡେଉଁଥିଲା । ସ୍ୱାମୀ ତ ବେଳେ ବେଳେ ଭଦ୍ରତା ଖାତିର୍‌ରେ କେତେ କଥା ସହିଯାଉଥିଲେ; କିନ୍ତୁ ସ୍ତ୍ରୀ ସ୍ୱାମୀଙ୍କୁ ମଧ୍ୟ ଗାଳିମନ୍ଦ ଦେଉଥିଲେ । ଗୃହାଗତ ବାଲ୍ୟବନ୍ଧୁଙ୍କୁ ତ ଭଦ୍ରତା ଖାତିର୍‌ରେ କିଛି ନା କିଛି ଖାଦ୍ୟପେୟ ଦେଇ ଆପ୍ୟାୟିତ କରିବାକୁ ହିଁ ହେବ । ସେ ଭିତରକୁ ଯାଇ ପତ୍ନୀଙ୍କୁ କହିଲେ, ''ରାଜପୁତନାରୁ ମୋର ଜଣେ ପିଲାଦିନର ପୁରୁଣା ଧର୍ମଭାଇ ଆସିଛନ୍ତି । ସେ ଆମ ଘରେ ଖାଇବେ । ଯେତେଦୂର ସମ୍ଭବ, ତାଙ୍କ ପାଇଁ ଭଲ ଭଲ ଜିନିଷ ତିଆରି କରି ଆଦରରେ ତାଙ୍କୁ ଖାଇବାକୁ ଦେବା ଉଚିତ । ସେ ତ ଆମର ମିତ୍ର ଏବଂ ତା ସଙ୍ଗେ ସଙ୍ଗେ ଅତିଥି ମଧ୍ୟ ।'' ପରମ୍ପରାରୁ ସେ ଅତିଥିସତ୍କାର କଥା ଶୁଣିଥିଲେ ; ପତ୍ନୀ ଯେପରି ବିରକ୍ତ ନ ହୁଅନ୍ତି, ସେଥିନିମନ୍ତେ ସେ ଏସବୁ ଆନୁସଙ୍ଗିକ ବିଷୟ ତାଙ୍କ ଆଗରେ ଉପସ୍ଥାପିତ କଲେ ; କିନ୍ତୁ ପତ୍ନୀଙ୍କ ଉପରେ ଏକଥାର ବା କି ପ୍ରଭାବ ପଡ଼ନ୍ତା ! ସେ ବିଗିଡ଼ିଯାଇ, ରାଗରେ ଅଗ୍ନିଶର୍ମା ହୋଇ କହିଲେ, ''ନିଆଁ ଚୁଲିକୁ ଯାଆନ୍ତୁ ଆପଣଙ୍କର ଏ ମିତ୍ର ଓ ଅତିଥି ; ଚୁଲି ଫୁଙ୍କି ଫୁଙ୍କି ମୋ ଆଖି ଫୁଟିଗଲାଣି । ମୋ ଦୁଃଖ ତ କହିଲେ ନ ସରେ । ଆଉ ଆଜି ମିତ୍ର, କାଲି ଅତିଥି, ପହରିଦିନ ବେପାରୀ– ପ୍ରତିଦିନ କିଛି ନା କିଛି ବିପଦ ଲାଗିରହିଛି । ଏ ଘରଧନ୍ଦାରେ ପଶି ମୁଁ ହଇରାଣ ହୋଇଗଲିଣି । ମୁଁ ଏସବୁ କରିପାରିବି ନାହିଁ ; ଅନ୍ୟ ବ୍ୟବସ୍ଥା କରନ୍ତୁ ।' ସ୍ୱାମୀ ଲଜ୍ଜିତ ହୋଇ ଚୁପ କରି କହିଲେ, ''ଆରେ ! ଟିକେ ଆସ୍ତେ ଆସ୍ତେ କହ ; ସେ ବାହାରେ ଠିଆ ହୋଇଛନ୍ତି ; ଶୁଣିଦେଲେ ତାଙ୍କ ମନରେ ଦୁଃଖ ହେବ ।'' ପତ୍ନୀ ରାଗିଯାଇ ପାଟି କରି କହିଲେ, ''ତା'ହେଲେ ତ ଆହୁରି ଭଲ ହେବ, ଶୀଘ୍ର ଆମ ଅଡୁଆ ତୁଟିଯିବ ।'' ସ୍ୱାମୀ ତାଙ୍କୁ ଟିକିଏ ଟେକାଟେକି କରି, କୌଣସିପ୍ରକାରେ ମନାଇ କହିଲେ, ''ଦେଖ ! ମୁଁ ଆଗରୁ ତାଙ୍କୁ କହିଦେଇଛି ଯେ, ମୋ ପାଖରେ କିଛି କାମଧନ୍ଦା ନାହିଁ; ଆପଣ ଅନ୍ୟ ବ୍ୟବସ୍ଥା କରନ୍ତୁ ; ଦୁଇଗ୍ୱରିଦିନ ଭିତରେ ସେ ଗ୍ୱଲିଯିବେ । ଏଇ କେତେଦିନ କୌଣସିପ୍ରକାରେ ଆମ ସମ୍ମାନକୁ ଆଖି ଆଗରେ ରଖି ତାଙ୍କର ଖାଦ୍ୟପେୟ

ବ୍ୟବସ୍ଥା କରିବା ନିହାତି ଦରକାର ।'' ପତ୍ନୀ କୌଣସିପ୍ରକାରେ କଥା ମାନି ବଡ଼ ମନକଷ୍ଟରେ ଖାଇବା-ପିଇବାର ବ୍ୟବସ୍ଥା କଲେ ।

ଖାଦ୍ୟ ପ୍ରସ୍ତୁତ ହୋଇସାରିବା ପରେ ଗରିବ ଅତିଥିଙ୍କୁ ସାଙ୍ଗରେ ଧରି ଧନିକ ମିତ୍ର ଭିତରକୁ ଆସନ୍ତି ତ, ପତ୍ନୀ କହିଲେ, ''ପ୍ରଥମେ ନିଜ ମିତ୍ରଙ୍କୁ ଖାଇବାକୁ ଦିଅନ୍ତୁ ; କାରଣ ଅତିଥିଙ୍କୁ ପ୍ରଥମେ ଭୋଜନ କରାଇବା ହେଉଛି ଗୃହସ୍ଥର ଧର୍ମ ; ତା'ପରେ ଆପଣ ଭୋଜନ କରିବେ ।'' ସ୍ୱାମୀ ଏକଥା ମାନି ପ୍ରଥମେ ଅତିଥିଙ୍କୁ ଭୂରିଭୋଜନ ଦେଲେ । ଖାଇବା ପାଇଁ ସୁମିଷ୍ଟ କ୍ଷୀରି, ପୁରି, ଦହି ଓ ନାନାପ୍ରକାର ସୁସ୍ୱାଦୁ ତରକାରି ଆଦି ଖୁବ୍ ଭଲ ଭଲ ଜିନିଷ ଦିଆଯାଇଥିଲା ; କିନ୍ତୁ ଖାଇବାକୁ ଦେଉଥିବା ବ୍ୟକ୍ତିଙ୍କ ମୁହଁରେ ହସ ବା ବଚନରେ ମାଧୁର୍ଯ୍ୟ ନ ଥିଲା । ତାଙ୍କ ମୁଖମଣ୍ଡଳରେ ରୁକ୍ଷତା ଓ ବିଷାଦର ଛାୟା ଖେଳିଯାଉଥିଲା । ଜଣାପଡୁଥାଏ, ସେ ଯେପରି କୌଣସି ବିପଦରେ ପଡିଯାଇଛନ୍ତି ଏବଂ ନିଜ ଇଚ୍ଛା ବିରୁଦ୍ଧରେ ବାଧ୍ୟବାଧକତାରେ ପଡ଼ି ତାଙ୍କୁ ଏସବୁ କରିବାକୁ ପଡୁଛି । ଗରିବ ଅତିଥିଜଣକ ଚୁପ୍‌ଚାପ୍ ଭୋଜନ ତ କଲେ ; କିନ୍ତୁ ବନ୍ଧୁଙ୍କ ମୁଖର ଭଙ୍ଗୀ ଦେଖି ଖୁସୀ ହୋଇପାରିଲେ ନାହିଁ । ସୁଖ ତ ପ୍ରେମରେ ହିଁ ସମ୍ମିଶ୍ରିତ ହୋଇଥାଏ । ଭୋଜନ କରିସାରିବା ପରେ ସେ ପରିସ୍ରା କରିବାକୁ ବାହାରକୁ ଗଲେ । ଏଣେ ଧନିକଙ୍କର ପତ୍ନୀ ନିଜ ପତିଙ୍କୁ ଖାଇବାକୁ ଦେଲେ । ତାଙ୍କ ଖାଇବା ପାଇଁ ବହୁତଗୁଡ଼ିଏ ଏପରି ଜିନିଷ ଥାଏ, ଯାହା କି ଅତିଥିଙ୍କୁ ଦିଆଯାଇ ନ ଥିଲା । ସେସବୁକୁ ଲୁଚାଇ ଅଲଗା ରଖାଯାଇଥିଲା । ସେହି ଗରିବ ଅତିଥି ବିଚରା ପରିସ୍ରା କରିସାରି ହାତ ଧୋଇବା ପାଇଁ ଭିତରକୁ ଆସିଲେ ଏବଂ କିଛି ଉଦ୍ଦେଶ୍ୟ ନ ଥିଲେ ମଧ୍ୟ ସ୍ୱାଭାବିକଭାବରେ ଧନିକ ମିତ୍ରଙ୍କ ଭୋଜନଥାଳି ଉପରେ ତାଙ୍କ ଦୃଷ୍ଟି ପଡ଼ିଗଲା । ସେ ଦେଖିବାକୁ ପାଇଲେ, ବାଦାମ-ହାଲୁଆ ରହିଛି; ଗୋଟିଏ ଗିନାରେ ରାବିଡ଼ି ତ, ଆଉ ଗୋଟିଏ ଗିନାରେ ଦୁଧସର; ପୁଣି ବସାଦହି, ଛେନା, ଲହୁଣୀ ଓ ଏପରି ବିଭିନ୍ନ କିସମର ରାଜକୀୟ ଖାଦ୍ୟ । କୋବି ତରକାରି, ପୋଟଳ ତରକାରି ଓ ଏହିପରି ଆହୁରି ଅନେକପ୍ରକାର ତରକାରି ତଥା ବିଭିନ୍ନ ପ୍ରକାର ଆଚାର ମଧ୍ୟ । ଏସବୁ ଦେଖି ସେ ସ୍ପଷ୍ଟରୂପେ ବୁଝିପାରିଲେ ଯେ, ଏହି ବିଷମତା ସକାଶେ ତାଙ୍କୁ ତାଙ୍କ ସହିତ ଖାଇବାକୁ ଦିଆଯାଇ ନ ଥିଲା । ଏହିପରି ପାତରଅନ୍ତର ବ୍ୟବହାର ଯୋଗୁଁ ତାଙ୍କର ଦୁଃଖ ଆହୁରି ବଢ଼ିଗଲା ଏବଂ ସେ ଚୁପ୍‌ଚାପ୍ ହାତ ଧୋଇ ବାହାରକୁ ଚାଲିଗଲେ ।

ରାତି ହେବାରୁ ଧନୀମିତ୍ର ତାଙ୍କ ପତ୍ନୀଙ୍କୁ ପଚାରିଲେ, ''ଅତିଥିଙ୍କର

ଶୋଇବାର ବ୍ୟବସ୍ଥା କେଉଁଠି କରାଯିବ ?'' ପତ୍ନୀ ବିରକ୍ତ ହୋଇ କହିଲେ, ''ମୋ ମୁଣ୍ଡ ଉପରେ ! ଭଲା ଇଏ ବି କେଉଁ ପଗ୍ଚରିବା କଥା ! ଯେଉଁଠି ସୁବିଧା ହେବ, ସେଇଠି ବ୍ୟବସ୍ଥା କରିଦିଅନ୍ତୁ । ଘରକୁ ଆସି କ'ଣ ସେ ଶୋଇବାରୁ ବଞ୍ଚିତ ହେବେ !'' ସ୍ୱାମୀ କହିଲେ, ''ଭଲ କଥା । ବାହାରେ ଗଦି ଉପରେ ସେ ଶୋଇପଡ଼ିବେ । କିନ୍ତୁ ସେଠାରେ ତ ବହୁତ ମଶା; ବିଚରାଙ୍କୁ ନିଦ ହେବ ନାହିଁ । ଦୁଇଦିନ ପାଇଁ ଗୋଟିଏ ମଶାରି ଦେଇଦିଅନ୍ତ ତ, ଭଲ ହୁଅନ୍ତା ।'' ପତ୍ନୀ ରାଗ ତମତମ ହୋଇ କହିଲେ, 'ମୋ ପାଖରେ ତ ଖଣ୍ଡିଏମାତ୍ର ମଶାରି ଅଛି । ଆପଣ ନେଇ ଟାଙ୍ଗନ୍ତୁ, ନ ହେଲେ ତାଙ୍କ ପାଇଁ ଟାଙ୍ଗିଦିଅନ୍ତୁ ।'' ପତ୍ନୀଙ୍କ ସ୍ୱଭାବ ତ ସେ ଜାଣିଛନ୍ତି ; ସୁତରାଂ କଥାକୁ ଅଧିକ ବଢାଇବା ଭଲ ନୁହେଁ ଜାଣି ସେ ଚୁପଗ୍ଚପ ବାହାରକୁ ଗ୍ଚଲିଗଲେ ଏବଂ ଅତିଥିବନ୍ଧୁଙ୍କୁ କହିଲେ, ''ଭାଇ ସାହେବ ! ଏଠି ତ ଗଦି ଓ ତକିଆ ରହିଛି, ଆପଣ ଏଇଠି ଶୋଇପଡ଼ନ୍ତୁ ; ସୁବିଧା ହେବ ।'' ସେ ବିଚରା ନମ୍ରତାର ସହିତ ତାଙ୍କ କଥା ମାନିଲେ ।

ଧନୀବ୍ୟକ୍ତି ଭିତରକୁ ଗ୍ଚଲିଗଲେ ଏବଂ ସେ ସେଠାରେ ଗଦି ଉପରେ ଶୋଇବାକୁ ଗଲେ । ଗରମ ଦିନ । ମଶା ବି ପ୍ରବଳ ! ଗଦି ଓ ତକିଆରେ ଛାରପୋକ ମଧ୍ୟ କମ ନ ଥିଲେ । ବିଛଣାରେ ଲୋଟିଯିବାମାତ୍ରେ ଛାରପୋକ ଧାଡି ଧାଡି ହୋଇ ବାହାରିଆସି ଆକ୍ରମଣ ଆରମ୍ଭ କରିଦେଲେ । ଛାରପୋକଙ୍କୁ ଖୋଜି ଖୋଜି ଧରି ଫିଙ୍ଗିଦେବା ଓ ମଶାଙ୍କୁ ଉଡାଇବାରେ ରାତି ପାହିଗଲା । ବିଚରା ଘଡ଼ିଏ ବି ସୁଖରେ ଶୋଇପାରିଲେ ନାହିଁ ।

ପରଦିନ ସକାଳେ ସେ ଘରୁ ବାହାରି ବଜାର ଆଡ଼କୁ ଗଲେ । ବଜାରଛକରେ ଯାଇ ପହଞ୍ଚିଲେ । ସେଠାରେ ନିଜ ଗାଆଁର ଜଣେ ପରିଚିତ ଲୋକଙ୍କ ସହିତ ତାଙ୍କର ଦେଖା ହୋଇଗଲା । ସେ ଲୋକଟି ବଡ଼ ଗରିବ; କିନ୍ତୁ ଖୁବ୍ ସହୃଦୟ । ଦେଖିବାମାତ୍ରେ ସେ ପାଖକୁ ଦୌଡ଼ି ଆସି ବଡ଼ ପ୍ରେମ ଓ ଉଲ୍ଲାସର ସହିତ ପଗ୍ଚରିବାକୁ ଲାଗିଲେ– ''ଭାଇ ସାହେବ ! ଆପଣ ଏଠାକୁ କେବେ ଆସିଲେ ? ମୋତେ ଟିକିଏ ଖବର ବି ଆଗରୁ ଦେଲେ ନାହିଁ । ଆପଣଙ୍କୁ ବଡ଼ କଷ୍ଟ ହୋଇଥିବ । ଖବର ପାଇଥିଲେ ମୁଁ ଯାଇ ଷ୍ଟେସନରେ ପହଞ୍ଚିଯାଇଥାନ୍ତି । ଏଠାରେ ପହଞ୍ଚିବା ପରେ ବି ଆପଣ କୌଣସି ଖବର ପଠାଇଲେ ନାହିଁ । କହନ୍ତୁ, ଆପଣ କେଉଁଠି ରହୁଛନ୍ତି ? ଗ୍ଚଲନ୍ତୁ; ଘରକୁ ଯିବା । ମୁଁ ଆପଣଙ୍କ ଜିନିଷପତ୍ର ନେଇଆସିବି । ମୋର ବଡ଼ ଭାଗ୍ୟ ଯେ, ଆପଣଙ୍କ ସହିତ ସାକ୍ଷାତ୍ ହୋଇଗଲା । ବିଦେଶରେ ଭଲା ନିଜ ଗାଆଁର ପ୍ରେମୀଲୋକ କେଉଁଠି ମିଳୁଛନ୍ତି !''

ତାଙ୍କର ହାର୍ଦ୍ଦିକ ପ୍ରେମମିଶ୍ରିତ କଥା ଶୁଣି ଗରିବ ବିଚରାଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା । ତାଙ୍କୁ ବଡ଼ ଭରସା ମିଳିଗଲା ; 'ବୁଡ଼ିଗଲା ଲୋକର କୁଟାଖିଏକୁ ଆଶ୍ରା' ପରି ତାଙ୍କୁ ଆଶ୍ରା ମିଳିଗଲା । ସେ ନିଜ ଆସିବାର ସମସ୍ତ କାରଣ ତାଙ୍କ ଆଗରେ କହିଲେ ଏବଂ କହିଲେ, "ଜିନିଷ ହିସାବରେ ତ ମୋ ପାଖରେ ଖଣ୍ଡିଏ ଧୋତି, ଖଣ୍ଡିଏ ଗାମୁଛା, ଖଣ୍ଡିଏ ସତରଞ୍ଜି ଓ ଲୋଟାଟିଏ – ବାସ୍ ଏତିକିମାତ୍ର ଅଛି । ଏସବୁ ସେହି ଧନୀ ଲୋକଙ୍କ ଘରେ ରଖିଛି ।" ସେହି ଗରୀବ ଭାଇଟି କହିଲେ, "ସେ ତ ବିରାଟ ବଡ଼ ଲୋକ । ଯଦି ଆପଣ ମୋତେ ଆପଣାର ଲୋକ ବୋଲି ମନେକରନ୍ତି, ତେବେ ଆପଣ ମୋ ଘରକୁ ଆସନ୍ତୁ । ଘରେ ସୁଖରେ ରହନ୍ତୁ । ଘରେ ଯାହାକିଛି ସୁଖା-ରୁଖା ତିଆରି ହେଉଛି, ଆନନ୍ଦରେ ଖାଆନ୍ତୁ । ମୁଁ ଖୁଚୁରା ଜିନିଷ କିଣାବିକା କାମ କରୁଛି । ନିତି ଦୁଇଟଙ୍କା ରୋଜଗାର ହୋଇଯାଉଛି । ଏକୁଟିଆ ଲୋକ । ଆପଣ ରହିଲେ, ଦୁଇଜଣ ହୋଇଯିବା । ଦୁଇଗୁଣ କାମ ହେବ, ରୋଜଗାର ବି ଦୁଇଗୁଣ କି ଅଢ଼େଇଗୁଣ ହେବାକୁ ଲାଗିବ । ଉଚିତ ପରିଶ୍ରମ ଓ ସାଧୁତା ଅବଲମ୍ବନ କରି କାମ କରିବାକୁ ହେବ । ପରିଶ୍ରମ ଯେମିତି, ସମୃଦ୍ଧି ବି ସେମିତି । ଯେମିତି କର୍ମ, ସେମିତି ଫଳ ।

*'ଉଦ୍ ଯୋଗିନଂ ପୁରୁଷସିଂହମୁପୈତ ଲକ୍ଷ୍ମୀଃ'*
*'ଉଦ୍ଯୋଗୀ ଲଭଇ ଲକ୍ଷ୍ମୀ ।'*

ଆପଣ ମାସକୁ ପଚିଶ ଟଙ୍କା ଘରକୁ ପଠାଇଦେବେ । ଆହୁରି ଅଧିକ ପାଇଁ ଚେଷ୍ଟା କରାଯିବ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ; ଚିନ୍ତା କରନ୍ତୁ ନାହିଁ । ଭଗବାନ୍ ଗରିବଙ୍କ ଡାକ ନିଶ୍ଚୟ ଶୁଣିବେ । ମୋ ପାଖରେ ନଗଦ ପଚିଶ ଟଙ୍କା ଅଛି । ତାକୁ ନେଇ ଆଜି ଘରକୁ ପଠାଇଦିଅନ୍ତୁ ।" ଏହିତକ କହିସାରି ସେ ତାଙ୍କୁ ନିଜ ଘରକୁ ନେଇଗଲେ । ଛୋଟ ମାଟିଘରଟିଏ । ଟିଣଛପର । ବେଶ୍ ସଫାସୁତୁରା । ବାହାରପଟେ ଛୋଟ ଦୋକାନଟିଏ । ପହଞ୍ଚିବାମାତ୍ରେ ହିଁ ସେ ପଚିଶ ଟଙ୍କା ବାହାର କରି, ସଙ୍ଗେ ସଙ୍ଗେ ମନିଅର୍ଡର କରି ତାଙ୍କ ଘରକୁ ପଠାଇଦେଲେ । ତାହାଫଳରେ ବିଚରା ଦୁର୍ଭିକ୍ଷପ୍ରପୀଡ଼ିତ ପରିବାରକୁ କେତେ ଯେ ଆନନ୍ଦ ଓ ଆଶ୍ୱାସନା ମିଳିଗଲା, ତାହା ବର୍ଣ୍ଣନା କରିହେବ ନାହିଁ । ତା'ପରେ ସେହି ଗରିବ ଦୋକାନୀ ଧନୀବ୍ୟକ୍ତିଙ୍କ ଘରକୁ ଯାଇ ତାଙ୍କର ଜିନିଷ ପତ୍ର ନେଇଆସିଲେ ।

ଘରକୁ ଫେରିଆସି ସେ ନିଜ ପତ୍ନୀଙ୍କୁ କହିଲେ, "ଆମ ନିଜ ଗାଆଁରୁ ଜଣେ ଭଦ୍ରବ୍ୟକ୍ତି ଆସିଛନ୍ତି । ସେ ମୋର ପରିଚିତ ମଧ୍ୟ । ତାଙ୍କ ପାଇଁ ରୋଷେଇ କର ।" ସାଧ୍ୱୀ ପତ୍ନୀ ପ୍ରସନ୍ନ ହୋଇ କହିଲେ, "ଆମର ବଡ଼ ଭାଗ୍ୟ ଯେ, ଆଜି

ଆମ ନିଜ ଗାଆଁରୁ ଜଣେ ଭଦ୍ରବ୍ୟକ୍ତି ଆସିଛନ୍ତି । ଭଗବାନ୍ ଆମକୁ ଏ ସୁଯୋଗ ଦେଇଥିବାରୁ ଆମେ ଧନ୍ୟ !'' ସେ ବଡ଼ ଖୁସିରେ ରୋଷେଇ କଲେ । ସେ ସମୟରେ ଚାଉଳ ଶସ୍ତା ଥାଏ । ଖାଇବାପାଇଁ ମୋଟା ବଗଡ଼ା ଚାଉଳର ଭାତ, ସାଧାରଣ ପନିପରିବା ତରକାରି, ଶାଗ, ଯଅ-ବୁଟର ରୁଟି ଏବଂ ଘୋଳଦହି ତିଆରି ହୋଇଗଲା । ଗୃହିଣୀ ଉଭୟଙ୍କୁ ବଡ଼ ଆଦରରେ, କୌଣସି ଭେଦଭାବ ନ ରଖି ସମାନଭାବରେ ଖାଇବାକୁ ଦେଲେ, —ବରଂ ଅତିଥିଙ୍କୁ ବାରମ୍ବାର ବଡ଼ ପ୍ରେମରେ, ଆଗ୍ରହ ସହକାରେ ସେ ବିଭିନ୍ନ ଖାଦ୍ୟ ପରିବେଷଣ କରିବାରେ ଲାଗିଥାଆନ୍ତି । ଆଜି ସେହି ଗରିବ ଭଦ୍ରବ୍ୟକ୍ତିଙ୍କୁ ଭୋଜନ କରିବାରେ ବଡ଼ ତୃପ୍ତି ମିଳିଲା; ବଡ଼ ଆନନ୍ଦ ମିଳିଲା; ବଡ଼ ସୁଖ ମିଳିଲା । ପ୍ରେମଭାବରେ ପ୍ରଦତ୍ତ ଶୁଖିଲା ରୁଟିରୁ ଯେଉଁ ଆନନ୍ଦ ମିଳେ, ପ୍ରେମରହିତ ମଧୁରଫଳ ଓ ମିଷ୍ଟାନ୍ନରେ ସେପରି ଆନନ୍ଦ କଦାପି ନ ଥାଏ । ଖାଇପିଇସାରି ଦୁହେଁ ଦୋକାନକୁ ଯାଇ କାମରେ ଲାଗିଗଲେ ।

ରାତିରେ ନିଜର ଅତିଥିଙ୍କର ଶୋଇବାପାଇଁ ସେହି ଗରିବ ଦୋକାନୀ ଗୋଟିଏ ଦଉଡ଼ି ବୁଣା ପୁରୁଣା ଖଟିଆ ଆଣି ପକାଇଦେଲେ । ସେହି ଖଟିଆଟିକୁ ସେ ତିନିଟଙ୍କାରେ କିଣିଥିଲେ । ତା'ପରେ ଛୋଟ ଛୋଟ ଅଖା ବିଛାଇଦେଲେ । ମଶାଙ୍କ ଦାଉରୁ ରକ୍ଷା ପାଇବାପାଇଁ ତାଙ୍କ ସ୍ତ୍ରୀ ନିଜର ପତଳା କନାର ପୁରୁଣା ଓଢ଼ଣୀଟି ଆଣି, ଖଟର ଚାରିକୋଣରେ ଚାରିଖଣ୍ଡ ବାଉଁଶ ପୋତିଦେଇ ଟାଙ୍ଗିଦେଲେ । ଦୁର୍ଭିକ୍ଷପ୍ରପୀଡ଼ିତ ସେହି ଗରିବ ଭାଇଜଣକ ଗତରାତିରେ ତ ଶୋଇପାରି ନ ଥିଲେ ; ପୂରା ଅନିଦ୍ରା ଥିଲେ । ଏବେ ଖଟିଆ ଉପରେ ଲୋଟିଯିବା ମାତ୍ରେ ତାଙ୍କୁ ଗାଢ଼ ନିଦ ଆସିଗଲା । ରାତିସାରା ସେ ବଡ଼ ଆରାମରେ ଶୋଇପଡ଼ିଲେ । ସବୁ କ୍ଳାନ୍ତି ଦୂର ହୋଇଗଲା ।

ତିନିଚାରିଦିନ ପରେ ଦିନେ ରାସ୍ତାରେ ଧନୀ ମିତ୍ରଙ୍କ ସହିତ ସେହି ଦୁର୍ଭିକ୍ଷପ୍ରପୀଡ଼ିତ ଗରିବ ଭାଇଙ୍କର ସାକ୍ଷାତ୍ ହୋଇଗଲା । ଧନୀ ମିତ୍ରଜଣକ ଭଦ୍ରତାଖାତିରିରେ ପଚାରିଲେ– ''କ'ଣ ? କେଉଁଠି କାମଧନ୍ଦାର କିଛି ବ୍ୟବସ୍ଥା ହେଲାଣି ? କେଉଁଠି ରହୁଛନ୍ତି ? ଖାଇବା-ପିଇବା କେଉଁଠି ହେଉଛି ?'' ସେ କହିଲେ, 'ଖୁବ୍ ଭଲ ବ୍ୟବସ୍ଥା ହୋଇଯାଇଛି । ମୁଁ ଆମ ଗାଆଁର ଅମୁକ ଦୋକାନୀ ଭାଇଙ୍କ ଘରେ ରହୁଛି । ପତି-ପତ୍ନୀ ଦୁହେଁଯାକ ବଡ଼ ଭଲ ଲୋକ । ଦୋକାନରୁ ମୋତେ ଅଧା ଭାଗ ବି ଦେଇଛନ୍ତି । ଯେଉଁଦିନ ତାଙ୍କ ସହିତ ଦେଖା ହେଲା, ସେହିଦିନ ତ ସେ ମୋ ଘରକୁ ପଚାଶଟଙ୍କା ପଠାଇଦେଲେ ଏବଂ ଭବିଷ୍ୟତ

ପାଇଁ ସେ ଆଶ୍ୱାସନା ଦେଇଛନ୍ତି । ଖାଇବାପିଇବା ପାଇଁ ଚିନ୍ତା କରିବାର ଆବଶ୍ୟକତା ନାହିଁ ; ଘରେ ସାଙ୍ଗ ହୋଇ ଖାଉଛୁ । ଅତି କମ୍‌ରେ ପଗ୍ୱଶଟଙ୍କା ପ୍ରତିମାସରେ ପିଲାଙ୍କ ପାଇଁ ଘରକୁ ପଠାଇଦିଆଯିବ । ଖାଇବାପିଇବାର ମଧ୍ୟ ବଡ଼ ସୁନ୍ଦର ବ୍ୟବସ୍ଥା । ତାଙ୍କ ଘରେ ଅମୃତତୁଲ୍ୟ ଭୋଜନ ପାଇ ମୁଁ ବଡ଼ ସନ୍ତୁଷ୍ଟ । ତାଙ୍କର ଏତେ ଉଚ୍ଚକୋଟିର ପ୍ରେମଭରା ସମତ୍ୱପୂର୍ଣ୍ଣ ବ୍ୟବହାର ଯେ, ମୁଁ ତାହା ଜୀବନସାରା ପାସୋରି ପାରିବି ନାହିଁ ।'' ତାଙ୍କ ଠାରୁ ଏକଥା ଶୁଣି, ମନେହେଲା, ଧନୀ ବ୍ୟକ୍ତିଙ୍କ ଗର୍ବ ଉପରେ ସତେ ଯେପରି ଶକ୍ତ ଆଘାତ ଲାଗିଲା । ସତକଥା । ନିଜ ବ୍ୟବହାର କଥା ସେ ଭଲଭାବରେ ଜାଣନ୍ତି । ଆଉ କହନ୍ତେ ବା କ'ଣ ! ଗୋଟିଏ କଥା ତାଙ୍କ ମୁଣ୍ଡରେ ଢୁକିଲା । ତାଙ୍କ ଘରେ ଖୁବ୍ ଭଲ ଖାଇବା-ପିଇବା ହେଉଛି ବୋଲି ତାଙ୍କର ତ ବଡ଼ ଗର୍ବ ଥାଏ । ତାଙ୍କ ଘରର ସାଜ-ସଜା ଖୁବ୍ ଭଲ ; ଗଦି-ତକିଆ, ଆଲୁଅଝାଡ଼—ଇମିତି କେତେ କ'ଣ ଭରି ହୋଇରହିଛି । ସେହି ଗରିବ ଲୋକ ଘରେ ଏଭଳି ଜିନିଷସବୁ କେଉଁଠୁ ମିଳିବ ! ସୁତରାଂ ସେ ନିଜ ବଡ଼ପଣିଆର ଟେକ ରଖିବା ଏବଂ ସେହି ଗରିବ ଦୋକାନୀଟିର ନିନ୍ଦା କରିବା ଅଭିପ୍ରାୟରେ କହିଲେ, ''ସେଠାରେ ଆପଣଙ୍କୁ କ'ଣ ଖାଇବାକୁ ମିଳୁଥିବ ! ସେହି ମୋଟା ବଗଡ଼ା ଭାତ, ଶୁଖିଲା ରୁଟି, ଶାଗପତ୍ରର ତରକାରି ଏବଂ ତଳେ ଶୋଇବାକୁ ପଡୁଥିବ କି, ପୁରୁଣା ଖଟିଆଟିଏ ମିଳିଥିବ । ସେ କାଙ୍ଗାଳ ଘରେ ଆଉ କ'ଣ ବା ଥିବ ! ଆମ ସେଠାକାର ବଢ଼ିଆ ବଢିଆ ଖାଦ୍ୟ ଓ ସଜାସଜି ହୋଇଥିବା ଘର ଛାଡ଼ି ଆପଣ ଏଠାକୁ ଆସିଗଲେ ସିନା ; ଏବେ କିନ୍ତୁ ମନେ ମନେ ପଶ୍ଚାତ୍ତାପ କରୁଥିବେ ।''

ସେ ହସି ହସି କହିଲେ, ''ଭାଇ ସାହେବ ! ଆପଣ ନିଜ ଘରେ ବଡ଼ ଧନୀ । ଆପଣଙ୍କ ଘରେ ଗଦି-ତକିଆ, ଆଲୁଅଝାଡ଼ ପୂରି ରହିଛି । ଘର ମଧ୍ୟ ଖୁବ୍ ଭଲ ସଜାସଜି ହୋଇଛି । ମୋ ପକ୍ଷରେ ତ ସେସବୁ ବିଷତୁଲ୍ୟ । ଖାଦ୍ୟପେୟ ଖୁବ୍ ବଢିଆ ; କିନ୍ତୁ ସେଥିରେ ମୋର ଯାଏଆସେ କ'ଣ ? ଆପଣଙ୍କ ଘରେ ମୋତେ ଖାଇବାରେ, କି ଶୋଇବାରେ, କେଉଁଥିରେ ହେଲେ ସୁଖ ମିଳୁ ନ ଥିଲା । ମୁଁ ତ ଛାରପୋକ ଓ ମଶାଙ୍କ ଦାଉରେ ଛଟପଟ ହୋଇଯାଉଥିଲି । ରାତିସାରା ଶୋଇପାରୁ ନ ଥିଲି । ମୋ ପକ୍ଷରେ ତ ଏଠାକାର ଦଉଡ଼ିଆ ଖଟ, ଅଖାର ବିଛଣା ଓ ପୁରୁଣା ଓଢଣୀର ମଶାରି ହିଁ ପରମ ସୁଖପ୍ରଦ । ଏଠାରେ ତ ମୁଁ ରାତିରେ ବଡ଼ ଆନନ୍ଦରେ, ଖୁବ୍ ସୁଖରେ ଶୋଇପାରୁଛି । ଖାଇବା-ପିଇବା କଥା ବା କ'ଣ କହିବି ? ଏଠାରେ ମୋଟା ଭାତ, ଶୁଖିଲା ରୁଟି ଓ ପରିବାପତ୍ରର

ତରକାରିରୁ ଯେଉଁ ସୁଖ ମିଳୁଛି, ଏପରି ସୁଖ ଆଉ କେଉଁଠି ମିଳି ନ ଥିଲା । ଏହାଙ୍କ ଘରର ଖାଦ୍ୟପେୟ ସାକ୍ଷାତ୍ ଅମୃତତୁଲ୍ୟ । ଆପଣ ଦୁହିଁଙ୍କ ମନରେ ମୁଁ ବୋଝ ପରି ହୋଇଥିଲି । ଆପଣ ମୋର ପହଞ୍ଚିବାଟାକୁ ବିପଦ ବୋଲି ମଣିଲେ ଏବଂ ଆପଣଙ୍କ ମନ ବିଷମତାରେ ପୂର୍ଣ୍ଣ ହୋଇଗଲା । ମହାପୁରୁଷମାନେ କହନ୍ତି, "ବିଷମତା ହିଁ ବିଷ ଏବଂ ସମତା ହିଁ ଅମୃତ ।" ସୁତରାଂ ଆପଣଙ୍କର ମଧୁର ଫଳ ଓ ମିଷ୍ଟାନ୍ନ ମଧ୍ୟ ବିଷମତା ହେତୁ ବିଷତୁଲ୍ୟ ଏବଂ ଏ ଭାଇଙ୍କର ଶୁଖାରୁଖା ଭୋଜନରେ ସମତା ଥିବାରୁ ଏହା ଅମୃତତୁଲ୍ୟ । କେବଳ ସେତିକି ନୁହେଁ, ଏମାନଙ୍କର ବ୍ୟବହାର ମଧ୍ୟ ଅମୃତସମ । ଆପଣଙ୍କ ପାଖରେ ଲକ୍ଷ ଲକ୍ଷ ଟଙ୍କା ରହିଛି ଏବଂ ଲକ୍ଷ ଲକ୍ଷ ଟଙ୍କା ଆୟ ହେଉଛି ମଧ୍ୟ । ଆପଣ ମୋର ବାଲ୍ୟକାଳର ଧର୍ମଭାଇ ମଧ୍ୟ ; କିନ୍ତୁ ଆପଣ ମୋର ଭୋକରେ ଛଟପଟ ହୋଇ କାନ୍ଦି ଗଡୁଥିବା ପିଲାଙ୍କ ପାଇଁ କିଛି ଟଙ୍କା ପଠାଇବା କଥା ଶୁଣିଲେ ନାହିଁ, କି ମୋତେ ମାସିକ ପଚ୍ଚଶଷାଠିଏ ଟଙ୍କାର ଦରମାରେ ଖଣ୍ଡିଏ ଚାକିରି ବି ଦେଲେ ନାହିଁ । ଏହି ଗରିବ ଦୋକାନୀ ବିଚରା ଆମ ଗ୍ରାମର ହୋଇଥିବାରୁ ତାଙ୍କ ସହିତ ମୋର ପରିଚୟ ଅତି ସାଧାରଣମାତ୍ର । ଗରିବ ନିର୍ଦ୍ଧନ ହୋଇଥିଲେ ମଧ୍ୟ ସେ ମୋତେ ଅତି ଆନନ୍ଦରେ ଆଶ୍ରୟ ଦେଲେ; ମୋତେ ସାହାଯ୍ୟ କଲେ; ସଙ୍ଗେ ସଙ୍ଗେ ମୋ ଘରକୁ ପଚ୍ଚଶଟଙ୍କା ପଠାଇଦେଲେ; ମୋତେ ତାଙ୍କ ନିଜ ଦୋକାନରୁ ଅଧେ ଭାଗ ଦେଇଦେଲେ । କହନ୍ତୁ ତ, ମୁଁ ତାଙ୍କର ଏ ଉପକାର କିପରି ବା ଭୁଲିପାରିବି ! ସେ ଏସବୁ ଯାହା କଲେ, ତାହା ମଧ୍ୟ ଉପକାର ଭାବନାରେ ନୁହେଁ– ବିଶୁଦ୍ଧ ପ୍ରେମରେ ଓ କର୍ତ୍ତବ୍ୟ ଭାବନାରେ । ସେ ମୋ ଉପରେ ଅନୁଗ୍ରହ କରିଛନ୍ତି ବୋଲି ଭାବନ୍ତି ନାହିଁ ; ବରଂ ମୋତେ ସୁଖ ପ୍ରଦାନ କରି ସେ ଓଲଟା ମୋ ନିକଟରେ କୃତଜ୍ଞ ବୋଲି ମନେକରନ୍ତି ଏବଂ ଏଥିରେ ନିଜକୁ ଧନ୍ୟ ମଣି ସୁଖୀ ହୁଅନ୍ତି । ତାଙ୍କ ଧର୍ମପତ୍ନୀଙ୍କର ମନୋଭାବ ମଧ୍ୟ ସେହିପରି ଅତି ଉଚ୍ଚକୋଟୀର । ତେଣୁ ସେ ଦୁହିଁଙ୍କର ମୁଖମଣ୍ଡଳ ସର୍ବଦା ପ୍ରସନ୍ନତା ଓ ହର୍ଷୋଲ୍ଲାସରେ ଝଲସୁଛି ।

ଧନୀ ମିତ୍ରଜଣକ ପଚ୍ଚାରିଲେ– "ମୋ ଘରେ ଆପଣଙ୍କୁ କେଉଁଥିରେ ବିଷମତା ଥିବାର ଜଣାପଡ଼ିଲା ଏବଂ ଏଠାରେ ସମତା ଅଛି ବୋଲି କିପରି ଜାଣିଲେ ?" ଏହା ଶୁଣି ସେ କହିଲେ, "ଆପଣଙ୍କ ଘରେ ଅବଶ୍ୟ ମୋ ପାଇଁ ଖାଇବାକୁ ଭଲ ଭଲ ଜିନିଷର ବ୍ୟବସ୍ଥା କରାଯାଇଥିଲା; ସେଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ମୋତେ ସେସବୁ ବିଷତୁଲ୍ୟ ବୋଧ ହେଲା । ଆପଣଙ୍କର ମନେଥିବ, ମୋତେ ଅତିଥି ବୋଲି କହି ପ୍ରଥମେ ଏକୁଟିଆ ଖାଇବାକୁ

ଦିଆଗଲା । ଖାଇସାରିବା ପରେ ମୁଁ ପରିସ୍ରା କରିବାକୁ ବାହାରକୁ ଗଲି । ହାତ ଧୋଇବାକୁ ଫେରିଆସେ ତ ମୋ ଦୃଷ୍ଟି ଆପଣଙ୍କ ଖାଦ୍ୟପଦାର୍ଥ ଉପରେ ପଡ଼ିଗଲା । ମୁଁ ଦେଖିଲି, ଆପଣଙ୍କ ପାଇଁ ବାଦାମ ହାଲୁଆ, ଲହୁଣୀ, ସରୁ ସରୁ ଲୁଚି, ଦୁଧସର, ରାବିଡ଼ି, ଖଣ୍ଡ ଖଣ୍ଡ ବସାଦହି, ମୁଣ୍ଡାମୁଣ୍ଡା ଛେନା, କୋବି ଓ ପୋଟଳ ଇତ୍ୟାଦିର ତରକାରି ଏବଂ କେତେରକମର ଆଗ୍ଚର ରଖାଯାଇଛି । ଏସବୁ ଜିନିଷ ମୋତେ ଦିଆଯାଇ ନ ଥିଲା । ମୋର ଏସବୁ ଖାଇବାରେ ରୁଚି ନ ଥିଲା, କିନ୍ତୁ ଏହି ବିଷମତା– ଭେଦଭାବ ଦେଖି, ପକ୍ଷପାତ ନୀତି ଦେଖି ମୋ ମନରେ ଦୁଃଖ ହେଲା । ମୁଁ ବୁଝିପାରିଲି ଯେ, ଆପଣଙ୍କୁ ଏସବୁ ଜିନିଷ ବିଶେଷରୂପେ ଖାଇବାକୁ ଦିଆଯିବାର ଥିବାରୁ ଆପଣଙ୍କ ଧର୍ମପତ୍ନୀ 'ଅତିଥିଙ୍କୁ ପ୍ରଥମେ ଭୋଜନ କରାଇବା' ବାହାନା କରି ଆପଣଙ୍କୁ ପରେ ଅଲଗା ଖାଇବାକୁ ଦେଲେ । ଏପରି ଭେଦଭାବ ପୋଷଣ ନ କରି ମୋତେ ବି ଆପଣଙ୍କ ସହିତ ଖାଇବାକୁ ଦିଆଯାଇଥିଲେ, ସେଥିରେ କ'ଣ ଅସୁବିଧା ହୋଇଥାଆନ୍ତା ? କିଛି ପଇସା ଅଧିକ ଖର୍ଚ୍ଚ ହୋଇଥାଆନ୍ତା, ଏଇଆ ତ ! ଆପଣ ମଧ୍ୟ ଏ କଥା ଉପରେ କିଛି ବିଗ୍ଚର ନ କରି ପତ୍ନୀଙ୍କ କଥା ମାନିନେଲେ । ଧର୍ମଭାଇଙ୍କ ସହିତ ଏପରି କପଟ ବ୍ୟବହାର କ'ଣ କଳଙ୍କ ନୁହେଁ ? ଏହି ବିଷମତା, ଏହି ଭେଦଭାବ ଥିବାରୁ ଆପଣଙ୍କ ଘରେ ଭୋଜନ କରିବା ହେଉଛି ବିଷତୁଲ୍ୟ ।

"ଏଠାରେ ଏହି ଭଦ୍ରବ୍ୟକ୍ତିଙ୍କର ବ୍ୟବହାର ପ୍ରତି ଦୃଷ୍ଟି ଦିଅନ୍ତୁ । ସେ ବିଚରା ଗରିବ ହେଲେ କ'ଣ ହେଲା, ତାଙ୍କ ଧର୍ମପତ୍ନୀ ମୋଟା ଭାତ, ଶୁଖିଲା ରୁଟି, ସାଦା ପରିବାପତରର ତରକାରି ଏବଂ ଘୋଳଦହି– ଯାହାକିଛି ଘରେ ଥିଲା, ଆମ ଉଭୟଙ୍କୁ ଏକା ସାଙ୍ଗରେ ବସାଇ ସମାନଭାବରେ ବଡ଼ ଆଦର, ପ୍ରେମ ଓ ଆନନ୍ଦର ସହିତ ଖାଇବାକୁ ଦେଲେ । ରାତିରେ ଶୋଇବା ପାଇଁ ନିଜେ ଶୋଉଥିବା ଏକମାତ୍ର ଖଟିଆଟି ମୋତେ ଦେଇଦେଲେ । ବିଛଣା ପକାଇବା ପାଇଁ ଛୋଟ ଛୋଟ ଅଖା ଯୋଗାଇଦେଲେ । ମଶାଙ୍କ ଦାଉରୁ ରକ୍ଷା କରିବାକୁ ନିଜ ଓଢଣୀ ଆଣି ମଶାରୀରୂପେ ଟାଙ୍ଗିଦେଲେ । ତାଙ୍କର ଏପରି ନିଷ୍କାମ ପ୍ରେମଭାବ ଓ ସମତାଯୁକ୍ତ ବ୍ୟବହାର ମୋ ଉପରେ ଯେଉଁ ପ୍ରଭାବ ବିସ୍ତାର କରିଛି, ତାହା ମୁଁ ହିଁ ଜାଣେ । ମୁଁ ତ ଏହି କାରଣରୁ ଏଠାରେ ଏହି ଭଦ୍ରବ୍ୟକ୍ତିଙ୍କ ଘରେ ଅମୃତୋପମ ବ୍ୟବହାର ପାଉଛି ଏବଂ ତାଙ୍କର ସେହି ବ୍ୟବହାର ସ୍ମରଣ କରି ବାରମ୍ବାର ପ୍ରଫୁଲ୍ଲିତ ହୋଇ ହର୍ଷରେ ଗଦ୍‌ଗଦ ହୋଇଯାଉଛି ।"

ଧନୀ ମିତ୍ର ଛଳନା କରି କହିଲେ, "ମୁଁ ମନ୍ଦାଗ୍ନି ରୋଗରେ ପୀଡ଼ିତ ;

ତେଣୁ ଡାକ୍ତର ମୋତେ ସେହିସବୁ ଜିନିଷ ଖାଇବାକୁ ନିର୍ଦ୍ଦେଶ ଦେଇଥିଲେ ।'' ତାହା ଶୁଣି ସେ କହିଲେ, ''ପ୍ରଥମ କଥା ହେଲା ମନ୍ଦାଗ୍ନିରେ ପୀଡ଼ିତ ରୋଗୀଙ୍କୁ ତ ସେପରି ଖାଦ୍ୟ ଖାଇବାକୁ ଦିଆଯାଏ ନାହିଁ ଏବଂ ଯଦି ବି ଦିଆଯାଏ, ତେବେ ମୋତେ ମଧ୍ୟ ସେହି ଖାଦ୍ୟଜିନିଷ ଦିଆଯାଇଥିଲେ କି କ୍ଷତି ହୋଇଥାଆନ୍ତା ?''

ଧନୀ ବ୍ୟକ୍ତିଙ୍କ ପାଟି ବନ୍ଦ ; ଏହାର ଉତ୍ତର ଦେବାକୁ ତାଙ୍କ ପାଖରେ କୌଣସି ଭାଷା ନ ଥିଲା । ସେ ଅତ୍ୟନ୍ତ ଲଜ୍ଜିତ ହୋଇ ଏପରି ବିଷମ ବ୍ୟବହାର ଓ ପ୍ରେମହୀନତା ନିମନ୍ତେ ମନେ ମନେ ପଶ୍ଚାତ୍ତାପ କରିବାକୁ ଲାଗିଲେ । ତାଙ୍କ ମୁଣ୍ଡ ତଳକୁ ହୋଇଗଲା । ସେ ସେହି ସ୍ଥାନ ଛାଡ଼ି ସେଠାରୁ ତୁରନ୍ତ ଚାଲିଗଲେ ।

ଏହା ଏକ କାଳ୍ପନିକ ଦୃଷ୍ଟାନ୍ତମାତ୍ର । ଏଥିରୁ ଆମେ ଏହି ଶିକ୍ଷା ଗ୍ରହଣ କରିବା ଉଚିତ ଯେ, ସମସ୍ତଙ୍କ ସହିତ ପ୍ରେମ ଓ ବିନୟଯୁକ୍ତ ତ୍ୟାଗମୟ ଉଦାର ବ୍ୟବହାର କରିବା ଏକାନ୍ତ ଆବଶ୍ୟକ । ଖାଦ୍ୟପେୟାଦି ବ୍ୟବହାରରେ ସଂପୂର୍ଣ୍ଣ ସମତା ରକ୍ଷା କରିବା ବାଞ୍ଛନୀୟ । ଏହାର ଅର୍ଥ ନୁହେଁ ଯେ, ବିଧର୍ମୀ ଓ ବିଜାତୀୟ ଲୋକମାନଙ୍କ ସହିତ ପଙ୍‌କ୍ତିଭୋଜନରେ ବସି ସେମାନଙ୍କ ପରି ନିଷିଦ୍ଧ ଭୋଜନ କରିବା । ଏହାର ତାତ୍ପର୍ଯ୍ୟ ହେଉଛି, ବିଧର୍ମୀ କି ବିଜାତୀୟ, ଯେ ବି ହୁଅନ୍ତୁ ନା କାହିଁକି, ସମସ୍ତଙ୍କୁ ଯଥାଯୋଗ୍ୟ ଶାସ୍ତ୍ରାନୁକୂଳ ଆଦର-ସତ୍କାରପୂର୍ବକ, ବିନୟ ଓ ପ୍ରେମପୂର୍ବକ କୌଣସି ଭେଦଭାବ ନ ରଖି, ଯାହା ଯାହା ନିଜ ପାଇଁ ଖାଇବାକୁ ତିଆରି ହୋଇଛି , ତାଙ୍କୁ ସେହି ସେହି ଖାଦ୍ୟ ହିଁ ଖାଇବାକୁ ଦେବା ଏବଂ ପ୍ରଥମେ ତାଙ୍କୁ ଖାଇବାକୁ ଦେଇ, ତା'ପରେ ଆମେ ନିଜେ ଖାଇବା । ମନୋଭାବ, ମନର ଭିତିରି ଉଦ୍ଦେଶ୍ୟ, ମନର ଭିତିରି ଅଭିପ୍ରାୟ ଶୁଦ୍ଧପୂତ ହେବା ଉଚିତ ଅର୍ଥାତ୍ ମନରେ କୌଣସି ବିଷମତାର ଭାବ ରହିବା ଅନୁଚିତ ।

***ହରି ଓଁ ତତ୍ ସତ୍***

~~ o ~~

# ୧୧. ଈଶ୍ୱର ଦୟାମୟ ଓ ନ୍ୟାୟବାନ୍

ସଚ୍ଚିଦାନନ୍ଦସ୍ୱରୂପ ଅଖିଳ ବ୍ରହ୍ମାଣ୍ଡନାୟକ ପରମଦୟାମୟ ପରମେଶ୍ୱରଙ୍କର ଅସ୍ତିତ୍ୱକୁ ସ୍ୱୀକାର କରୁଥିବା ପ୍ରାୟ ସକଳ ମତବାଦୀ ଏ ବିଷୟରେ ଏକମତ ଯେ, ଈଶ୍ୱର ହେଉଛନ୍ତି ଦୟାମୟ ଓ ନ୍ୟାୟବାନ୍ । ଈଶ୍ୱରଙ୍କ ଠାରେ ଦୟାଳୁତା ଓ ନ୍ୟାୟପରାୟଣତା– ଏହି ଦୁଇଟିଯାକ ଦିବ୍ୟଗୁଣ ଏକସଙ୍ଗରେ ସଂପୂର୍ଣ୍ଣରୂପେ ରହିଥାଏ ଏବଂ ସେ ଜୀବମାନଙ୍କ ପ୍ରତି ବ୍ୟବହାର କରିବାରେ ଉଭୟ ଭାବକୁ ସେ ଏକା ସମୟରେ କାର୍ଯ୍ୟରେ ଲଗାଇଥାନ୍ତି । ଏ ବିଷୟ ନେଇ କେହି କେହି ଆଶଙ୍କା କରନ୍ତି ଯେ, ‘‘ନ୍ୟାୟ ଓ ଦୟା ଦୁଇଟିଯାକ ଗୁଣ ଏକତ୍ର କିପରି ରହିପାରିବ ? ଅଦାଲତରେ ନ୍ୟାୟ-ବିଚାର କରୁଥିବା ବିଚାରପତି ଯଦି ଦୟାପରବଶ ହୋଇ ଦଣ୍ଡନୀୟ ପ୍ରକୃତ ଅପରାଧୀକୁ ମୋଟେ ଦଣ୍ଡ ନ ଦିଅନ୍ତି ବା ସେ ଯେତିକି ଦଣ୍ଡ ପାଇବା କଥା, ତହିଁରୁ କମ୍ ଦଣ୍ଡ ଦିଅନ୍ତି, ତେବେ ତାହା କ'ଣ ଉଚିତ ନ୍ୟାୟ ହେବ କିମ୍ବା ଯଦି ସେ ଅପରାଧୀକୁ ପୂର୍ଣ୍ଣମାତ୍ରାରେ ଦଣ୍ଡ ଦିଅନ୍ତି, ତେବେ ତାଙ୍କ ଦୟା କ'ଣ ସେଠାରେ ଅକାମି ହୋଇଗଲା ନାହିଁ ? ଏହା ଈଶ୍ୱରଙ୍କ ପ୍ରତି ବି କାହିଁକି ପ୍ରଯୁଜ୍ୟ ହେବ ନାହିଁ ?’’

ଏହି ଆଶଙ୍କାର ଉତ୍ତର ସହଜରେ ଦେଇହେବ ନାହିଁ । ପରମାତ୍ମାଙ୍କ ଗୁଣକୁ ବିବେଚନା କରିବା ଏବଂ ତା'ଉପରେ କୌଣସି ମନ୍ତବ୍ୟ ଦେବା ମୋ'ପରି ମନୁଷ୍ୟ ପକ୍ଷରେ ତ ଅତି ପିଲାଳିଆ କଥା ; କିନ୍ତୁ ନିଜ ଚିତ୍ତବିନୋଦନ ଲାଗି ପରମାତ୍ମାଙ୍କ ଗୁଣଗାନ ଅଭିପ୍ରାୟରେ ଯତ୍‌କିଞ୍ଚିତ୍ ପ୍ରଚେଷ୍ଟା କରାଯାଉଛି । ପ୍ରକୃତରେ ମନୁଷ୍ୟକୃତ ଆଇନ ସହିତ ଈଶ୍ୱରଙ୍କ ବିଧାନକୁ କେବେ ବି ସମାନ କରାଯାଇ ପାରିବ ନାହିଁ । ମନୁଷ୍ୟ ଯଦି ସ୍ୱାର୍ଥବଶତଃ ଆଇନ ପ୍ରଣୟନ ନ କରନ୍ତା, ତେବେ ତା' ଉପରେ ପରିସ୍ଥିତି ଓ ବାତାବରଣର ପ୍ରଭାବ ନିଶ୍ଚୟ ପଡ଼ନ୍ତା । ଭବିଷ୍ୟତ ବିବେଚନାରେ ମଧ୍ୟ ତାହା ସଂପୂର୍ଣ୍ଣ ଅମୂଳକ ବୋଲି କୁହାଯାଇ ନ ପାରେ । ଆସକ୍ତି ବା ଅନ୍ୟ କୌଣସି କାରଣବଶତଃ ସେଥିରେ ଅନେକ ପ୍ରକାର ଭୁଲ ପାଇଁ ଅବକାଶ ରହିଯାଇ ପାରେ ; କିନ୍ତୁ ଈଶ୍ୱରଙ୍କ ଠାରେ ଭୁଲର କୌଣସି ଅବକାଶ ନାହିଁ । ଏହା ଛଡ଼ା ଈଶ୍ୱର ଦୟା, ନ୍ୟାୟ ଓ ଉଦାରତାର ଅସୀମ ଭଣ୍ଡାର ହୋଇଥିବାରୁ ତାଙ୍କ ବିଧାନରେ ବି ଦୟା, ନ୍ୟାୟ ଓ ଉଦାରତାର ପ୍ରାଚୁର୍ଯ୍ୟ ରହିଥାଏ । ଜଗତକୁ ସତ୍ୟ ବୋଲି ମନେକରୁଥିବା ମନୁଷ୍ୟ ସ୍ୱାର୍ଥରହିତ ହୋଇ ନ ଥିବାରୁ ନ୍ୟାୟ, ଦୟା ଓ ଉଦାରତାପୂର୍ଣ୍ଣ ଆଇନ ପ୍ରଣୟନ କରିପାରିବ ନାହିଁ । ସଂପୂର୍ଣ୍ଣରୂପେ ସ୍ୱାର୍ଥରହିତ, ସମସ୍ତଙ୍କର ସୁହୃଦ୍, ଦୟାର ସାଗର ମହାପୁରୁଷ, ଯାହାଙ୍କର ସୌହାର୍ଦ୍ଦ୍ୟ, ଦୟା,

ପ୍ରେମ, ବାତ୍ସଲ୍ୟ ଆଦି ଗୁଣର ସୀମା ନାହିଁ, ସେ ହିଁ ସେପରି ଆଇନ ପ୍ରସ୍ତୁତ କରିପାରନ୍ତି । ତେଣୁ ଯଦି ବା ମନୁଷ୍ୟପ୍ରଣୀତ ଆଇନ ସହିତ ଐଶ୍ୱରିକ ବିଧାନର ତୁଳନା କରାଯାଇ ପାରିବ ନାହିଁ, ତଥାପି ବିଗ୍ଚର କରି ଦେଖିଲେ, ମନୁଷ୍ୟଠାରେ ମଧ୍ୟ ଦୟା ଓ ନ୍ୟାୟ ଉଭୟର ଏକତ୍ର ସମାବେଶ ଘଟିଥିବା ପ୍ରମାଣିତ ହୋଇପାରେ । ଏଥିନିମନ୍ତେ କିଛି କାଳ୍ପନିକ ଉଦାହରଣ ଏଠାରେ ଦିଆଯାଉଛି ।

ନାରାୟଣପ୍ରସାଦ ନାମକ ଜଣେ କାୟସ୍ଥଙ୍କ ଠାରୁ ରାମଲାଲ ନାମକ ଜଣେ ବ୍ୟବସାୟୀଙ୍କର ଦୁଇହଜାର ଟଙ୍କା ପାଇବାର ଥାଏ । ନାରାୟଣପ୍ରସାଦ ଜଣେ ସାଧୁସ୍ୱଭାବର ସତ୍ୟପରାୟଣ ବ୍ୟକ୍ତି ; କିନ୍ତୁ ଦୁର୍ଭାଗ୍ୟବଶତଃ ନାନାପ୍ରକାର ବିପଦର ସମ୍ମୁଖୀନ ହୋଇ ତାଙ୍କର ସକଳ ରୋଜଗାର ନଷ୍ଟ ହୋଇଗଲା; ଘରର ସମସ୍ତ ସମ୍ପତ୍ତି, ଏପରି କି ନିଜ ପତ୍ନୀଙ୍କର ସୁନାର ମଙ୍ଗଳସୂତ୍ର ଆଦି ଗହଣା ବି ବିକ୍ରି ହୋଇଗଲା । ଶେଷକୁ ସେ ମାସିକ ଗ୍ଳିଶଟଙ୍କା ଦରମାରେ ଖଣ୍ଡିଏ ଗ୍ଳକିରି କଲେ । ତାଙ୍କର ବଡ଼ ପରିବାର । ସେହି ଅଳ୍ପ ଆୟରେ ସେ ବଡ଼ କଷ୍ଟରେ ନିଜ କୁଟୁମ୍ବ ପୋଷଣ କରୁଥିଲେ । ଗ୍ଳରିଆଡ଼େ ତ ବେକାରି ସମସ୍ୟା ବଢ଼ିଗ୍ଳଲିଥାଏ ; ତେଣୁ ଅଧିକ ଆୟର ଅବକାଶ ନ ଥାଏ । ରାମଲାଲ ତାଙ୍କ ଟଙ୍କା ପାଇଁ ତାଗିଦା କରିବା ଆରମ୍ଭ କରିଦେଲେ । ସେ ବାରମ୍ବାର ଚେତାବନୀ ଦେଉଥାଆନ୍ତି ; ସତର୍କବାଣୀ ଶୁଣାଉଥାଆନ୍ତି ; କିନ୍ତୁ ନାରାୟଣପ୍ରସାଦ କୌଣସିପ୍ରକାରେ ଟଙ୍କା ଦେଇପାରିଲେ ନାହିଁ । ଶେଷକୁ ରାମଲାଲ ଅଦାଲତରେ ନାଲିଶ କଲେ । ଯେଉଁ ଅଦାଲତରେ ମକଦ୍ଦମା ଗ୍ଳଲିଥାଏ, ସେହି ଅଦାଲତର ଜଜ୍ ହେଉଛନ୍ତି ଜଣେ ଉଚ୍ଚକୋଟିର ଆଇନବିଶେଷଜ୍ଞ, ନ୍ୟାୟବନ୍ତ, ଦୟାଳୁ ଓ ଅତି ଉତ୍ତମ ବ୍ୟକ୍ତି । ନାରାୟଣପ୍ରସାଦ ଜଜ୍‌ଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, 'ଛାମୁ ! ମୋତେ ସେଠ ରାମଲାଲଙ୍କୁ ଦୁଇହଜାର ଟଙ୍କା ନିଶ୍ଚୟ ଦେବାକୁ ପଡ଼ିବ ଏବଂ ପ୍ରାଣପଣେ ଚେଷ୍ଟା କରି ତାଙ୍କୁ ଦେବି ମଧ୍ୟ ; କିନ୍ତୁ ବର୍ତ୍ତମାନ ମୋର ଅବସ୍ଥା ବଡ଼ ଖରାପ; ମୋ ଘରେ ପଇସାଟିଏ ବି ନାହିଁ, କି ମୋର କୌଣସି ଜାଗିରୀ ବା ଜମିବାଡ଼ି ବି ନାହିଁ । ଆପଣ ଏ ବିଷୟ ଭଲରୂପେ ତଦନ୍ତ କରିନିଅନ୍ତୁ । ମୁଁ ମାସକୁ ଗ୍ଳିଶ ଟଙ୍କା ଦରମାରେ ଗୋଟିଏ ଜାଗାରେ ଗ୍ଳକିରି କରିଛି । ଘରେ ପିଲାପିଲି ମିଶି ମୋଟ ଆଠପ୍ରାଣୀ କୁଟୁମ୍ବ । ସେମାନଙ୍କ ନିର୍ବାହ ବଡ଼ କଷ୍ଟରେ ହେଉଛି । ତଥାପି ମୁଁ କୌଣସିପ୍ରକାରେ କଷ୍ଟ ସହି ବାର୍ଷିକ ଦୁଇଶହ ଟଙ୍କା ଲେଖାଏଁ କିସ୍ତିରେ ରାମଲାଲଜୀଙ୍କୁ ତାଙ୍କ ଟଙ୍କା ନିଶ୍ଚୟ ଦେଇଦେବି । ଏହା ସତ୍ତ୍ୱେ ରାମଲାଲଜୀ ଯଦି ମୋତେ ବାଧ୍ୟ କରନ୍ତି ଓ ଆପଣ ମୋତେ ଜେଲକୁ ପଠାଇଦିଅନ୍ତି, ତେବେ ମୁଁ ଜେଲ୍ ଯିବି; କିନ୍ତୁ ଦେବାଳିଆ ହେବି ନାହିଁ । ଅବଶ୍ୟ ସେପରି ଅବସ୍ଥାରେ

ମୋର ପିଲାମାନଙ୍କୁ ବିପଦ ଗ୍ରାସିଯିବ । ସେମାନେ ବିପଦର ଶିକାର ହୋଇଯିବେ । ଛାମୁଙ୍କର ଯାହା ଇଚ୍ଛା, ତାହା କରନ୍ତୁ ।''

ନାରାୟଣପ୍ରସାଦଙ୍କର ସତକଥା ଶୁଣି ଜଜ୍ ଖୁସୀ ହୋଇଗଲେ । ସେ କହିଲେ, ''ଭାଇ ! ତୁମେ ନିଜ ମହାଜନଙ୍କୁ ବୁଝାଇ ଏକଥା ଠିକ୍ କରିନିଅ । ତୁମର ଏପରି ଅବସ୍ଥାରେ ସେ ଅବଶ୍ୟ ତୁମ ସର୍ତ୍ତରେ ରାଜିହେବା ଉଚିତ ।'' ନାରାୟଣପ୍ରସାଦ ରାମଲାଲଙ୍କୁ ବହୁତ ବୁଝାଇଲେ, ବହୁତ ଅନୁନୟ-ବିନୟ କରି କାତର ପ୍ରାର୍ଥନା କଲେ ; କିନ୍ତୁ ରାମଲାଲ କହିଲେ, ''ମୁଁ କୌଣସିପ୍ରକାରେ ଏଥିରେ ରାଜି ନୁହେଁ ।'' ଅଦାଲତରେ ମକଦ୍ଦମା ପଡ଼ିଲା । ନାରାୟଣପ୍ରସାଦଙ୍କୁ ରାମଲାଲଙ୍କର ଦୁଇହଜାର ଟଙ୍କା ଦେବାକୁ ହେବ, ଏକଥା ପ୍ରମାଣିତ ହୋଇଗଲା । ଜଜ୍ ତଦନ୍ତ କରାଇ ଜାଣିଲେ ଯେ, ନାରାୟଣପ୍ରସାଦ ନିଜ ଦୂରବସ୍ଥା ବିଷୟରେ ଯାହା ଯାହା କହିଥିଲେ, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ନିଜେ ରାମଲାଲ ମଧ୍ୟ ସେ କଥାକୁ ଅନୁମୋଦନ କଲେ । ରାମଲାଲ ମନା କଲେ ମଧ୍ୟ ଜଜ୍ ନାରାୟଣପ୍ରସାଦଙ୍କ କହିବା ଅନୁସାରେ ବର୍ଷକୁ ଦୁଇଶହ ଟଙ୍କାର କିସ୍ତି କରି ଦୁଇହଜାର ଟଙ୍କାର ଡିଗ୍ରୀ ଦେଇଦେଲେ । ଜଜ୍‌ଙ୍କ ଦୟାଳୁତା ଦେଖି ନାରାୟଣପ୍ରସାଦ ଆନନ୍ଦରେ ବିହ୍ୱଳ ହୋଇଗଲେ । ତା'ହେଲେ କ'ଣ ଏ ନିଷ୍ପତ୍ତିରେ ଜଜ୍‌ଙ୍କୁ ଅନ୍ୟାୟୀ ବୋଲି କୁହାଯିବ ? ତାଙ୍କର ଏହି କାର୍ଯ୍ୟକୁ କ'ଣ ଦୁର୍ନୀତିପରାୟଣତା ବୋଲି ମନେକରାଯିବ ? ଏବଂ ଏଥିରେ କ'ଣ ଦୟାଳୁତା ନାହିଁ ବୋଲି ମନେକରାଯିବ ? ଏଥିରେ ଦୟା ଓ ନ୍ୟାୟ ଉଭୟର ଏକତ୍ର ସମାବେଶ ଘଟିଛି । ଯେତେବେଳେ ଏହି ସଂସାରର ଆଇନରେ ଏପରି ହୋଇପାରୁଛି, ତେବେ ନିଜ ଭକ୍ତଙ୍କୁ ତାଙ୍କ ଇଚ୍ଛାନୁସାରେ ଦୟାଳୁତା ଓ ନ୍ୟାୟ ଦେଖାଉଥିବାରୁ ଭଗବାନଙ୍କୁ କଣ ଦୋଷୀ କରାଯିବ ?

× × × ×

ବର୍ତ୍ତମାନ ମାଡ଼ଫୌଜଦାରିକୁ ନେଇ ଦୁଇଟି ଉଦାହରଣ ଦେଖନ୍ତୁ–

ଗୋବିନ୍ଦରାମ ଓ ରାମପ୍ରସାଦ ନାମକ ଦୁଇଜଣ ବ୍ୟକ୍ତି ଏକା ସାହିରେ ରହନ୍ତି । ସେ ଦୁହିଁଙ୍କ ମଧ୍ୟରେ ପ୍ରାୟ ବାଦାନୁବାଦ ଲାଗି ରହିଥାଏ । ବାଦାନୁବାଦରେ ତ କଳି-କଜିଆ ଓ ମାରପିଟର ଭୟ ଥାଏ । ଦିନେ ଦୁହେଁ ଶାସ୍ତ୍ରାଲୋଚନା କରୁଥିବାବେଳେ ନିଜର ପ୍ରତିକୂଳ ସିଦ୍ଧାନ୍ତ ଶୁଣି ରାମପ୍ରସାଦ କ୍ରୋଧାନ୍ୱିତ ହୋଇଗଲେ । *''କ୍ରୋଧ ମନୁଷ୍ୟର ପରମ ଅରି, କ୍ଷଣକେ ଚେତନା ନିଅଇ ହରି ।''* କ୍ରୋଧ-ବଶୀଭୂତ ମନୁଷ୍ୟର ତ ବୁଦ୍ଧି-ବିବେକ ଲୋପ ପାଇଯାଏ । ତା'ର ହିତାହିତ ଜ୍ଞାନ ରହେ ନାହିଁ । କ୍ରୋଧରୁ ମୋହ ଜାତ ହୁଏ ; ମୋହ ହେତୁ ସ୍ମୃତିବିଭ୍ରମ

ଘଟେ । ସ୍ମୃତିବିଭ୍ରମ ହେତୁ ବୁଦ୍ଧି-ବିବେକ ଲୋପ ପାଏ । ବୁଦ୍ଧି ଲୋପ ପାଇଲେ ମନୁଷ୍ୟ ଭଲମନ୍ଦ କିଛି ବିଗ୍ଚାର କରି ନ ପାରି ତା ମନକୁ ଯାହା ଆସିଲା, ତାହା କରିପକାଏ । ସୁତରାଂ ରାମପ୍ରସାଦ ରାଗିଯାଇ ଗୋବିନ୍ଦରାମକୁ ଜୋରରେ ମାରପିଟ୍ କଲେ । ଗୋବିନ୍ଦରାମ ଏଥି ସକାଶେ ଅଦାଲତରେ ରାମପ୍ରସାଦଙ୍କ ବିରୁଦ୍ଧରେ ଫୌଜଦାରୀ ମକଦ୍ଦମା ଆଗତ କଲେ । ଏ କଥା ଶୁଣିବାକ୍ଷଣି ମାଜିଷ୍ଟ୍ରେଟ୍‌ଙ୍କ ନିକଟକୁ ଯାଇ ରାମପ୍ରସାଦ ସକଳ ବୃତ୍ତାନ୍ତ ସଫା ସଫା କହିଦେଲେ । ସେ କହିଲେ, "ଆମେ ଧର୍ମବିଷୟରେ ପରସ୍ପର ମଧ୍ୟରେ ଆଲୋଚନା କରୁଥିଲୁ । ଗୋବିନ୍ଦରାମ ନ୍ୟାୟୋଚିତ ମାର୍ଗରେ ମୋ ଯୁକ୍ତିକୁ ଖଣ୍ଡନ କରିଥିଲେ ; କିନ୍ତୁ ତାହା ମୋ ମତର ସମ୍ପୂର୍ଣ୍ଣ ପ୍ରତିକୂଳ ବୋଧ ହେବାରୁ ମୋ ମନରେ କ୍ରୋଧ ଆସିଗଲା ଏବଂ ତା'ଫଳରେ ମୁଁ ତାଙ୍କ ପ୍ରତି ଏହି ଗର୍ହିତ ବ୍ୟବହାର କରିବସିଲି । ସେ ନିରପରାଧ । ଏଥିରେ ଯାହା କିଛି ଅପରାଧ, ଯାହା କିଛି ଦୋଷ, ସବୁ ମୋର । ମୋର କୃତକର୍ମ ସକାଶେ ମୁଁ ବଡ଼ ଲଜ୍ଜିତ । ସେଥିନେଇ ମୁଁ ପଶ୍ଚାତ୍ତାପ କରୁଛି । ବର୍ତ୍ତମାନ ଆପଣ ବିଗ୍ଚାର କରି ଯାହା ନିଷ୍ପତ୍ତି କରିବେ, ଯେଉଁ ଆଦେଶ ଦେବେ, ମୁଁ ତାହା ମୁଣ୍ଡପୋତି ମାନିନେବାକୁ ସଦା ପ୍ରସ୍ତୁତ ।" ମାଜିଷ୍ଟ୍ରେଟ୍ କହିଲେ, "ଭାଇ ! ମୁଁ ଏଥିରେ କିଛି କରିପାରିବି ନାହିଁ । ତୁମେ ଗୋବିନ୍ଦରାମଙ୍କ ପାଖକୁ ଯାଇ ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କର । ସେ ଗ୍ଚହିଁବେ ତ, ତୁମକୁ କ୍ଷମା କରିପାରିବେ । ତୁମ ପକ୍ଷରେ ଏହା ହିଁ ସବୁଠାରୁ ସରଳ ଉପାୟ ।" ମାଜିଷ୍ଟ୍ରେଟ୍‌ଙ୍କ କଥା ଶୁଣି ରାମପ୍ରସାଦ ଆଉ ଡେରି ନ କରି ସଙ୍ଗେ ସଙ୍ଗେ ଗୋବିନ୍ଦରାମଙ୍କ ଘରକୁ ଗଲେ । ସେଠାରେ ସେ ତାଙ୍କ ଗୋଡ଼ତଳେ ପଡ଼ି, ନିଜ ଦୋଷ ସ୍ୱୀକାର କରି, ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କରି କହିଲେ, "ବର୍ତ୍ତମାନ ମୁଁ ଆପଣଙ୍କ ଚରଣରେ ଶରଣ ପଶୁଛି । ମୁଁ ନିଶ୍ଚିତରୂପେ ଆପଣଙ୍କ ନିକଟରେ ଅପରାଧୀ । ମୋ ଅପରାଧ ମାର୍ଜନା କରନ୍ତୁ । ମୋତେ କ୍ଷମା କରିଦିଅନ୍ତୁ । ମୁଁ ଆପଣଙ୍କ ଠାରୁ ମୋର ଅପରାଧ ଲାଗି କ୍ଷମା ଭିକ୍ଷା କରୁଛି ।" ତାଙ୍କର ଅନୁନୟ ବିନୟ ଓ କାକୁତିଭରା କଥା ଶୁଣି ଏବଂ ତାଙ୍କ ହୃଦୟରେ ପ୍ରକୃତ ପଶ୍ଚାତ୍ତାପ ଉଦୟ ହୋଇଥିବାର ହୃଦୟଙ୍ଗମ କରି ଗୋବିନ୍ଦରାମ ଏଥିରେ ସମ୍ମତ ହେଲେ ଏବଂ ଅଦାଲତରୁ ମକଦ୍ଦମା ଉଠାଇ ଆଣିବାପାଇଁ ଦରଖାସ୍ତ ଦେଇଦେଲେ । ମାଜିଷ୍ଟ୍ରେଟ୍ ଦରଖାସ୍ତ ମଞ୍ଜୁର କରି ରାମପ୍ରସାଦଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଲେ । ଏ ବିଷୟରେ କେହି କ'ଣ କହିପାରିବ ଯେ, ଗୋବିନ୍ଦରାମ କି ମାଜିଷ୍ଟ୍ରେଟ୍ କୌଣସି ଅନ୍ୟାୟ କଲେ ବା ସେମାନେ ଦୟା କଲେ ନାହିଁ ? ଥରେ ପରମଭକ୍ତ ରାଜର୍ଷି ଅମ୍ବରୀଷଙ୍କ ନିକଟରେ ଅପରାଧ କରିଥିବାରୁ ଦୁର୍ବାସା ମୁନିଙ୍କୁ ଭଗବାନ୍ ବିଷ୍ଣୁ ମଧ୍ୟ ତାଙ୍କରି ଶରଣ

ଗ୍ରହଣ କରିବାଲାଗି ପଠାଇ ଦେଇଥିଲେ । ଦୁର୍ବାସା ମୁନି ଅନନ୍ୟୋପାୟ ହୋଇ ଅମ୍ବରୀଷଙ୍କ ନିକଟରେ କ୍ଷମାପ୍ରାର୍ଥନା କରନ୍ତେ ସେ ଭଗବାନ୍ ବିଷ୍ଣୁଙ୍କର ଚକ୍ରଙ୍କୁ ପ୍ରାର୍ଥନା କରି ତାଙ୍କୁ ଶାସ୍ତି ଦେବାରୁ ନିବୃତ୍ତ କଲେ ଏବଂ ତା'ଫଳରେ ଦୁର୍ବାସା ମୁନିଙ୍କର ପ୍ରାଣରକ୍ଷା ହୋଇଗଲା । ଏ କ୍ଷେତ୍ରରେ ଦୟା ଓ ନ୍ୟାୟ ଉଭୟ କ୍ରିୟାରେ ଏକତ୍ର ସମାବେଶ ହୋଇଥିଲା ।

× × × ×

ଗୋଟିଏ ଗ୍ରାମରେ ଶିବରାମ ନାମକ ଜଣେ ସାଧୁସ୍ୱଭାବର ବ୍ୟକ୍ତି ରହୁଥିଲେ । ସେହି ଗ୍ରାମରେ ଜଣେ ଡକାୟତ ମଧ୍ୟ ଥିଲା । ଶିବରାମ ବେଳେ ବେଳେ ତା ଠାରୁ ଡକାୟତି କଥା ଶୁଣିଥାନ୍ତି । *'ହୀନ ସଙ୍ଗତେ ହୀନ ଗତି'; 'ଦୁର୍ଜନ ସଙ୍ଗେ କଲେ ବାସ, ନିଶ୍ଚେ ଘଟିବ ସର୍ବନାଶ'*– କୁସଙ୍ଗର ପରିଣତି ବଡ଼ ଭୟାବହ ହୋଇଥାଏ । ଶିବରାମଙ୍କ ମନରେ ଦିନେ ଲୋଭ ହେଲା । *'ଲୋଭେନ ବୁଦ୍ଧିଶ୍ଚଳତି'* । ଲୋଭ ତାଙ୍କ ବୁଦ୍ଧିକୁ ଖରାପ କରିଦେଲା । ପରିଣାମସ୍ୱରୂପ, ସେ ବିବେକହୀନ ହୋଇ ନନ୍ଦରାମ ନାମକ ଜଣେ ଲୋକ ଘରେ ଡକାୟତି କରି, ନଗଦ ତିନିହଜାର ଟଙ୍କା ଓ କିଛି ଗହଣା ଚୋରି କରି ଆଣିଲେ । ଯେଉଁମାନେ ତାଙ୍କର ପ୍ରତିରୋଧ କଲେ, ସେମାନଙ୍କୁ ଅମାନ୍ୟ କରି ସେ ସେଠାରୁ ଚୋରିମାଲ୍ ଧରି ପଳାଇଆସିଲେ ।

ସେ ଚୋରିଧନ ଧରି ଘରେ ପହଞ୍ଚିଲେ ଏବଂ ନିଜ ପତ୍ନୀଙ୍କୁ ସକଳ ବୃତ୍ତାନ୍ତ କହିଲେ । ଶିବରାମଙ୍କ ପତ୍ନୀ ଥିଲେ ବଡ଼ ସାଧ୍ୱୀ । ସ୍ୱାମୀଙ୍କର ଏପରି କୁକର୍ମ ଶୁଣି ତାଙ୍କ ମନରେ ଦୁଃଖ ହେଲା । ସେ ସ୍ୱାମୀଙ୍କ ପାଦରେ ମୁଣ୍ଡ ଲଗାଇ ପ୍ରଣାମ କଲେ ଏବଂ ସୁପରାମର୍ଶ ଦେଇ, ପ୍ରାର୍ଥନା କରି କହିଲେ, "ବର୍ତ୍ତମାନ ଆପଣ ଏ ଧନ ନେଇ ତାଙ୍କୁ ଫେରାଇଦିଅନ୍ତୁ ।" ଶିବରାମ ତ ପ୍ରକୃତରେ ଥିଲେ ଜଣେ ଉତ୍ତମ ସ୍ୱଭାବର ବ୍ୟକ୍ତି; ଡକାୟତି ତ ତାଙ୍କର ବେଉସା ନୁହେଁ । କେବଳ କୁସଙ୍ଗରେ ପଡି ତାଙ୍କ ବୁଦ୍ଧି ଖରାପ ହୋଇଯାଇଥିଲା । ପତ୍ନୀ ବୁଝାଇ କହିବାରୁ ସେ ନିଜର ଦୋଷ ସ୍ପଷ୍ଟରୂପେ ବୁଝିପାରିଲେ । ପତ୍ନୀଙ୍କର ସୁପରାମର୍ଶ ଅନୁସାରେ ସେ ତୁରନ୍ତ ସେହି ଚୋରାଧନ ନେଇ କଲେକ୍ଟର ମହାଶୟଙ୍କ ବାସଭବନକୁ ଗଲେ ଏବଂ ସବୁତକ ଟଙ୍କା ତଥା ଗହଣା ତାଙ୍କ ନିକଟରେ ଥୋଇଦେଇ, ଆତ୍ମସମର୍ପଣପୂର୍ବକ କରୁଣଭାବରେ ସବୁକଥା କହି ପ୍ରାର୍ଥନା କଲେ, "ଆଜ୍ଞା ! ମୁଁ ବଡ଼ ଅପରାଧ କରିଛି । କୁସଙ୍ଗରେ ପଡ଼ି ମୋ ମନ ଲୋଭଗ୍ରସ୍ତ ହୋଇଗଲା । ମୁଁ ମୋର ବୁଦ୍ଧିବିବେକ ହରାଇବସିଲି । ବିଚରା ନନ୍ଦରାମଙ୍କ ପ୍ରତି ଅନ୍ୟାୟ ଆଚରଣ କରି ମୁଁ ତାଙ୍କ ମନରେ ଦାରୁଣ ଦୁଃଖ ଦେଇଛି । ଯାହା ମୋର ବାପ-ଅଜା

ଚଉଦପୁରୁଷ କେବେ କରି ନ ଥିଲେ, ମୁଁ ଆଜି ସେହି ଗର୍ହିତ ଦୁଷ୍କର୍ମ କରିଛି । ମୁଁ ଅକ୍ଷମଣୀୟ ଅପରାଧ କରିବସିଛି । ମୋର ଏ ଅପରାଧ ତ କୌଣସିପ୍ରକାରେ କ୍ଷନ୍ତବ୍ୟ ନୁହେଁ ; କିନ୍ତୁ ମୁଁ ଆପଣଙ୍କ ଚରଣରେ ଶରଣ ପଶୁଛି, ଆପଣ ମୋତେ ରକ୍ଷା କରନ୍ତୁ । ଭବିଷ୍ୟତରେ ମୁଁ କଦାପି ଏପରି ଦୁଷ୍କର୍ମ କରିବି ନାହିଁ ।'' ତାଙ୍କ କଥା ଉପରେ କଲେକ୍ଟରଙ୍କର ବିଶ୍ୱାସ ଆସିଗଲା । ସେ ବିଚାର କଲେ ଯେ, ଯଦି ୟାଙ୍କର ଉଦ୍ଦେଶ୍ୟ ଖରାପ ହୋଇଥାଆନ୍ତା, ତେବେ ଚୋରାଧନ ଧରି ଏଠାକୁ ସେ ଆସିଥାନ୍ତେ ବା କାହିଁକି ! କଲେକ୍ଟର ତାଙ୍କୁ ସେହିଠାରେ ଅଟକାଇ ପୁଲିସଙ୍କ ଦ୍ୱାରା ନନ୍ଦରାମଙ୍କୁ ଡକାଇ ପଠାଇଲେ । ନନ୍ଦରାମ ପୋଲିସଥାନାରେ ଏତଲା ଦେବାକୁ ବାହାରିଥାଆନ୍ତି ; ଠିକ୍ ସେତିକିବେଳକୁ ଜଣେ କନଷ୍ଟେବଳ ଆସି କହିଲେ, ''ତୁମ ଘରେ ଯେ ଡକାୟତି କରିଥିଲେ, ସେ ଚୋରିମାଲ ସହିତ କଲେକ୍ଟର ସାହେବଙ୍କ ବଙ୍ଗଳାରେ ହାଜିରି ହୋଇଛନ୍ତି ; ସାହେବ ତୁମକୁ ଡକାଇଛନ୍ତି ।'' ଚୋରିଯାଇଥିବା ଜିନିଷ ମିଳିଯିବା କଥା ଶୁଣି ନନ୍ଦରାମ ଆନନ୍ଦରେ କୁରୁଳି ଉଠିଲେ । ସେ ସଙ୍ଗେ ସଙ୍ଗେ ସିପାହୀଙ୍କ ସହ କଲେକ୍ଟର ସାହେବଙ୍କ ବଙ୍ଗଳାକୁ ଚାଲିଲେ । ତାଙ୍କୁ ଦେଖିବାମାତ୍ରେ ଶିବରାମ ତାଙ୍କ ଗୋଡ଼ ଧରିପକାଇଲେ ଓ ଅପରାଧ କ୍ଷମା କରିବା ସକାଶେ ପ୍ରାର୍ଥନା କରି, କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । ନନ୍ଦରାମ କିନ୍ତୁ ତାଙ୍କର କୌଣସି କଥା ଶୁଣିଲେ ନାହିଁ ଏବଂ କହିଲେ, ''ତୋତେ ଜେଲ୍‌କୁ ନ ପଠାଇ ମୁଁ କଦାପି ଛାଡ଼ିବି ନାହିଁ ।'' ଘଟଣା କୋର୍ଟକୁ ଗଲା । କଲେକ୍ଟର ସାହେବ ପଚାରିବାରୁ ଶିବରାମ ତାଙ୍କ ବାସଭବନରେ ଯେଉଁ ଯେଉଁ କଥା କହିଥିଲେ, ଏଠାରେ ମଧ୍ୟ ସେହି କଥା ସଫା ସଫା କହିଦେଲେ । ତାହା ଶୁଣି କଲେକ୍ଟର ନନ୍ଦରାମଙ୍କୁ ପଚାରିଲେ, ''ୟାଙ୍କର ଚାଲିଚଳନ ବିଷୟରେ ତୁମର ମତାମତ କ'ଣ ?'' ନନ୍ଦରାମ କହିଲେ, ''ମୁଁ ୟାଙ୍କୁ ଜାଣେ । ସେ କୁଳୀନ ସମ୍ଭ୍ରାନ୍ତ ବଂଶର ପିଲା । ଡକାୟତମାନଙ୍କ କୁସଙ୍ଗରେ ପଡ଼ି ତାଙ୍କର ଏଭଳି ଦୁର୍ବୁଦ୍ଧି ଜାତ ହୋଇଥାଇପାରେ । କିନ୍ତୁ ତାଙ୍କୁ ନିଶ୍ଚୟ ଦଣ୍ଡ ମିଳିବା ଉଚିତ ; ନଚେତ୍ ସେ ଏହିପରି କାର୍ଯ୍ୟ କରିଚାଲିବେ ।'' କଲେକ୍ଟର ବଡ଼ ଦୟାଳୁ ବ୍ୟକ୍ତି । ସେ ଶିବରାମଙ୍କର ସରଳତା ଓ ସତ୍ୟପରାୟଣତାରେ ବଡ଼ ପ୍ରସନ୍ନ ହୋଇଗଲେ ଏବଂ ଭବିଷ୍ୟତ ପାଇଁ ସାବଧାନ କରାଇଦେଇ ଶିବରାମଙ୍କୁ ଖଲାସ କରିଦେଲେ । ଏହିପରିଭାବରେ ଦୟା ପ୍ରଦର୍ଶନ କରିଥିବା କଲେକ୍ଟରଙ୍କୁ ଆମେ କ'ଣ ଅନ୍ୟାୟୀ ବୋଲି କହିପାରିବା କି ? ନିର୍ମଳ ଓ ସରଳ ନିଷ୍କପଟ ହୃଦୟରେ ଭଗବାନଙ୍କର ଶରଣ ଗ୍ରହଣ କଲେ, ସେ ମଧ୍ୟ ଜନ୍ମ-ମୃତ୍ୟୁ-ରୂପୀ ସଂସାରବନ୍ଧନରୁ ଏହିପରି ଚିରମୁକ୍ତ କରିଦେଇଥାନ୍ତି ।

ଏଠାରେ ପ୍ରଶ୍ନ ଉଠିପାରେ, ଏସବୁ ଉଦାହରଣ ତ ସାଧାରଣ ଅପରାଧୀଙ୍କ ନିମନ୍ତେ ଉଦ୍ଦିଷ୍ଟ । ନରହତ୍ୟା ଇତ୍ୟାଦି ଘଟଣାରେ ବିପକ୍ଷ ଲୋକମାନେ ରାଜି ହେଲେ ବି ନ୍ୟାୟକର୍ତ୍ତା ଜଜ୍ ଅପରାଧୀକୁ ଖଲାସ କରିଦେଇ ପାରିବେ ନାହିଁ । ଯଦି ଖଲାସ କରିଦିଅନ୍ତି, ତେବେ ସେ ଉପଯୁକ୍ତ ନ୍ୟାୟ ବିଗ୍ରର କଲେ ନାହିଁ ବୋଲି ବୁଝିବାକୁ ହେବ ଏବଂ ସେ ଅନ୍ୟାୟର ଆଶ୍ରୟ ନେଇଛନ୍ତି ବୋଲି ଜାଣିବାକୁ ହେବ । ଏହି ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ବୁଝିବା ଆବଶ୍ୟକ ଯେ, ନରହତ୍ୟା ତିନିପ୍ରକାରରେ କରାଯାଇଥାଏ, ଯଥା, ନ୍ୟାୟ ପାଇଁ, ଭୁଲରେ ଓ ଜାଣିଶୁଣି ଅନ୍ୟାୟରେ । ନ୍ୟାୟ ପ୍ରତିଷ୍ଠା ପାଇଁ କରାଯାଉଥିବା ନରହତ୍ୟା ତ ଅପରାଧରେ ଗଣ୍ୟ ନୁହେଁ । ନିଃସ୍ୱାର୍ଥଭାବରେ ଧର୍ମରକ୍ଷା ସକାଶେ, ଜନମଙ୍ଗଳ ନିମନ୍ତେ, ନ୍ୟାୟରକ୍ଷା ଲାଗି ବା ଆତ୍ମରକ୍ଷା ପାଇଁ ଯେଉଁ ନରହତ୍ୟା ହୁଏ, ସେଥିରେ ହତ୍ୟାକାରୀ ଦଣ୍ଡନୀୟ ନୁହନ୍ତି । ଅପରାଧୀକୁ ନ୍ୟାୟସଙ୍ଗତ ମୃତ୍ୟୁଦଣ୍ଡ ବା ଫାଶୀଦଣ୍ଡ ଦେଉଥିବା ଜଜ୍‌ଙ୍କୁ ବା ଫାଶୀଦଣ୍ଡ ପାଇଥିବା ଅପରାଧୀକୁ ଫାଶୀରେ ଝୁଲାଇଦେବା ଘାତକକୁ କେହି ଅପରାଧୀ ବୋଲି କହନ୍ତି ନାହିଁ । ଡକାୟତମାନଙ୍କ ଠାରୁ ଧନ ଓ ପ୍ରାଣରକ୍ଷା କରିବା ନିମନ୍ତେ ସେମାନଙ୍କ ଉପରେ ଅସ୍ତ୍ରଶସ୍ତ୍ରରେ ଆକ୍ରମଣ କରିଥିବା ବ୍ୟକ୍ତି ମଧ୍ୟ ପୁରସ୍କାରର ପାତ୍ରରୂପେ ବିବେଚିତ ହୁଅନ୍ତି । ଏହି କେତେଦିନ ତଳେ ମିଳିଥିବା ଖବରରୁ ଜଣାଯାଏ ଯେ, ଜଣେ ବଙ୍ଗାଳୀ ଯୁବତୀ ଅସତ୍ ଉଦ୍ଦେଶ୍ୟରେ ତାଙ୍କ କୋଠରୀରେ ପଶିଥିବା ଜଣେ ଯୁବକଙ୍କୁ ହତ୍ୟା କରିଥିଲେ । ତାଙ୍କୁ ଗିରଫ କରାଯାଇଥିଲା । କିନ୍ତୁ କୋର୍ଟ ତାଙ୍କ କାର୍ଯ୍ୟର ଭୂୟସୀ ପ୍ରଶଂସା କରି ତାଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଇଥିଲେ । ଅବଶ୍ୟ ମାନୁଷୀନ୍ୟାୟରେ ଭୁଲର ସମ୍ଭାବନା ରହିପାରେ, ଯଥା, କୌଣସି କୌଣସି ସ୍ଥଳରେ ନ୍ୟାୟୋଚିତ କର୍ମ କରୁଥିବା ବ୍ୟକ୍ତିଙ୍କୁ ମଧ୍ୟ ଦୋଷୀ ସାବ୍ୟସ୍ତ କରି ଦଣ୍ଡନୀୟ ବୋଲି ବିବେଚନା କରାଯାଇପାରେ । କିନ୍ତୁ ଅନ୍ତର୍ଯ୍ୟାମୀ ସର୍ବଜ୍ଞ ସର୍ବଦ୍ରଷ୍ଟା ପରମାତ୍ମାଙ୍କ ନିକଟରେ ତ ଏପରି ଭୁଲର କୌଣସି ସମ୍ଭାବନା ନାହିଁ ।

ଦ୍ୱିତୀୟ ପ୍ରକାରର ନରହତ୍ୟା ଭୁଲରେ ହୋଇଥାଏ । ଏପରି ହତ୍ୟାର ଅପରାଧୀ ଦୋଷୀ ବୋଲି ସାବ୍ୟସ୍ତ ହୁଅନ୍ତି ; କାରଣ ତାଙ୍କର ଅସାବଧାନତା ଯୋଗୁ ହିଁ ନରହତ୍ୟା ହୋଇଛି । ଏପରି ଅପରାଧୀ ଚେଷ୍ଟା କଲେ ରିହାତି ପାଇଯାଆନ୍ତି ବା ଉପଯୁକ୍ତ ଚେଷ୍ଟାର ଅଭାବରୁ ତାଙ୍କୁ ଅଳ୍ପ କିଛି ଦଣ୍ଡ ବି ମିଳିପାରେ ।

ତୃତୀୟ ପ୍ରକାରର ନରହତ୍ୟା କ୍ରୋଧ, ଲୋଭ, ଶତ୍ରୁତା ଇତ୍ୟାଦି କାରଣରୁ ଜାଣିଶୁଣି କରାଯାଇଥାଏ । ଏପରି ଅପରାଧୀ ଦୋଷୀ ବୋଲି ପ୍ରମାଣିତ ହେଲେ, ଆଇନ ଅନୁସାରେ ପ୍ରାୟତଃ ବିଗ୍ରରାଳୟରୁ ଖଲାସ ହୋଇପାରେ ନାହିଁ ।

ଏଥିମଧ୍ୟରୁ ପ୍ରଥମଟିର ଉଦାହରଣ ତ ଦିଆଯାଇସାରିଛି । ଏହିପରି ଆହୁରି ଅନେକ ଉଦାହରଣ ମଧ୍ୟ ମିଳିପାରେ । ଖଡ୍‌ଗବାହାଦୁର ନାମକ ଜଣେ ନେପାଳୀ ଯୁବକ ଅତ୍ୟାଗ୍ରହୀ ହୀରାଲାଲ ଅଗ୍ରୱାଲଙ୍କୁ ହତ୍ୟା କରିଥିଲେ । ତାଙ୍କୁ ସାମାନ୍ୟ ଅଳ୍ପ କିଛି ଦଣ୍ଡ ବି ହୋଇଥିଲା ; କିନ୍ତୁ ଜନସାଧାରଣଙ୍କ ନିବେଦନରେ ବଡ଼ଲାଟ ତାଙ୍କୁ ଖଲାସ କରିଦେଲେ । ଦ୍ୱିତୀୟଟି ସକାଶେ ନିମ୍ନଲିଖିତ ଉଦାହରଣ ଦେଖନ୍ତୁ–

ରାଜପୁତନାର ଗୋଟିଏ ଗ୍ରାମରେ ରାମସିଂହ ନାମକ ଜଣେ ରାଜପୁତ ଯୁବକ ଜଙ୍ଗଲରେ ପାହାଡ଼ ତଳେ ବନ୍ଧୁକ ଚଳାଇବା ଶିଖୁଥିଲେ । ପାଖରେ ତାଙ୍କ ମିତ୍ର ସଜନସିଂହ ଠିଆ ହୋଇଥିଲେ । ଲକ୍ଷ୍ୟଭେଦ କରିବା ନିମନ୍ତେ ସେ ବନ୍ଧୁକର ଘୋଡ଼ିଆ ଟିପିବାକୁ ଯାଉଥିବାବେଳେ ସମ୍ମୁଖରେ ଜଣେ ଲୋକ ଗ୍ଭଲିଯାଉଥିବାର ଦେଖାଗଲା । ତାଙ୍କୁ ରକ୍ଷା କରିବା ସକାଶେ ହାତ ବୁଲାଇଦେଲା– ବେଳେ, ବନ୍ଧୁକର ଘୋଡ଼ିଆ ଟିପି ହୋଇଗଲା ଏବଂ ଗୁଳି ଫୁଟି ପାଖରେ ଠିଆ ହୋଇଥିବା ସଜନସିଂହଙ୍କ ବକ୍ଷ ଭେଦ କରି ବାହାରିଗଲା । ସେ ଦୁମ୍ କରି ତଳେ ଟଳିପଡ଼ିଲେ । ରାମସିଂହଙ୍କ ହୋସ୍ ଉଡିଗଲା । ତାଙ୍କ ଚେତା ବୁଡିଗଲା । ପୁଲିସ ଆସି ପହଞ୍ଚିଗଲେ । ରାମସିଂହ ହତ୍ୟା ଅପରାଧରେ ଅଭିଯୁକ୍ତ ହୋଇ ଗିରଫ ହେଲେ ; ଏକେ ତ ନିଜ ହାତରେ ମିତ୍ରଙ୍କର ମୃତ୍ୟୁ ଘଟିବାର ଦୁଃଖ; ପୁଣି ତା'ସାଙ୍ଗକୁ ରାଜଦଣ୍ଡ । ବିଚରା ବଡ଼ ଦୁର୍ଦ୍ଦଶାଗ୍ରସ୍ତ ହୋଇପଡ଼ିଲେ । କୋର୍ଟରେ ମୋକଦ୍ଦମା ରୁଜୁ ହେଲା । ରାମସିଂହ ସମସ୍ତ ଘଟଣା ସତ ସତ କହିଦେଇ କ୍ଷମାପ୍ରାର୍ଥନା କଲେ । ହାକିମ ସଜନସିଂହଙ୍କ ପରିବାରବର୍ଗଙ୍କୁ ପଗ୍ଭରିଲେ, "ଆପଣମାନଙ୍କ ଜାଣିବାରେ ରାମସିଂହଙ୍କର କୌଣସି ଅସତ୍ ଉଦ୍ଦେଶ୍ୟ, କୌଣସି ମନ୍ଦ ଅଭିପ୍ରାୟ ଥିଲା କି ନାହିଁ, ସତ କହନ୍ତୁ । ସେ ଭୁଲରେ ଏପରି କରିଦେଇଛନ୍ତି ବୋଲି ଯାହା କହୁଛନ୍ତି, ସେ ବିଷୟରେ ଆପଣମାନଙ୍କର ଧାରଣା କ'ଣ ? ମତାମତ କ'ଣ ?" ସେମାନେ କହିଲେ, "ଆମ୍ଭେମାନେ ଅବଶ୍ୟ ବିଶ୍ୱାସ କରୁଛୁ ଯେ, ସଜନସିଂହଙ୍କୁ ମାରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା; ସେ ଥିଲେ ତାଙ୍କର ଘନିଷ୍ଠ ବନ୍ଧୁ । ଆମ୍ଭେମାନେ ମଧ୍ୟ ସେ ସମୟରେ ସେଠାରେ ଉପସ୍ଥିତ ଥିଲୁ । କିନ୍ତୁ ତାଙ୍କର ଅସାବଧାନତା ଯୋଗୁଁ ଏ ହତ୍ୟାକାଣ୍ଡ ଘଟିଛି । ସୁତରାଂ ସେ ନିଶ୍ଚୟ ଦଣ୍ଡନୀୟ । ତାଙ୍କୁ ଶାସ୍ତି ଦେବା ଆବଶ୍ୟକ ।" ବିଗ୍ଭରପତି ତାଙ୍କର ଅଭିପ୍ରାୟ ଏବଂ ସତ୍ୟତା ଉପରେ ବିଶ୍ୱାସ କରି, ଭବିଷ୍ୟତ ପାଇଁ ସତର୍କ କରାଇଦେଇ ତାଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଲେ । ଏପରି ଦୟା କରୁଥିବା ବିଗ୍ଭରପତିଙ୍କୁ କ'ଣ ଅନ୍ୟାୟୀ ବୋଲି କୁହାଯାଇ ପାରିବ ? ମନୁଷ୍ୟ ଯେତେବେଳେ ଏହିପରି ଦୟା ଓ ନ୍ୟାୟର ବ୍ୟବହାର ଏକା ସମୟରେ କରିପାରୁଛି, ସେତେବେଳେ କେହି ଶରଣାଗତ ହେଲେ

ନ୍ୟାୟରକ୍ଷା କରି ମଧ୍ୟ ପରମାତ୍ମା ତାଙ୍କ ଅପରାଧକୁ ଯେ ଦୟାପରବଶ ହୋଇ କ୍ଷମା କରିଦିଅନ୍ତି, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଏଠାରେ ଉଦାହରଣ ସ୍ୱରୂପ ଗୋଟିଏ ପୁରାଣ କଥା ମନେପଡ଼ିଯାଏ, ଯେଉଁଥିରେ କି ଭୁଲବଶତଃ ଅପରାଧ କରିପକାଇଥିବା ଜଣେ ପରମଧାର୍ମିକ ପୁରୁଷଙ୍କୁ ମଧ୍ୟ ଦଣ୍ଡଭାଗୀ ହେବାକୁ ପଡ଼ିଛି । ଏହି ଇତିହାସ ମହାରାଜ ଦଶରଥଙ୍କର । ତାଙ୍କ ହାତରେ ମାତୃ-ପିତୃଭକ୍ତ ଶ୍ରବଣକୁମାରଙ୍କର ମୃତ୍ୟୁ ଘଟିଥିଲା । ଏହି ଇତିବୃତ୍ତିକୁ ନେଇ ଲୋକମାନେ ପ୍ରଶ୍ନ ଉଠାନ୍ତି, "ଯଦି ମହାରାଜ ଦଶରଥ ଭୁଲବଶତଃ କରିଥିବା ଅପରାଧ ନିମନ୍ତେ କ୍ଷମା ପାଇପାରିଲେ ନାହିଁ, ତେବେ ଅନ୍ୟମାନେ ଭୁଲବଶତଃ କରୁଥିବା ଅପରାଧ ସକାଶେ ଯେ କ୍ଷମା ପାଇପାରିବେ, ଏହା କିପରି ମାନି ନିଆଯିବ ?" ଏହି ସମସ୍ୟା ସମାଧାନର ଇତିବୃତ୍ତି ଏହିପ୍ରକାର–

ଏକଦା ମହାରାଜ ଦଶରଥ ରାତ୍ରି ସମୟରେ ମୃଗୟା ଉଦ୍ଦେଶ୍ୟରେ ହିଂସ୍ରଜନ୍ତୁସଙ୍କୁଳ ଅରଣ୍ୟରେ ପ୍ରବେଶ କଲେ । ଗୋଟିଏ ସ୍ଥାନରେ ସେ ନଦୀରେ ହାତୀଗର୍ଜନ କରୁଥିବା ଭଳି ଶବ୍ଦ ଶୁଣି ସହସା ତୀକ୍ଷ୍ଣ ଶବ୍ଦଭେଦୀ ତୀର ସନ୍ଧାନ କଲେ । ତତ୍କ୍ଷଣାତ୍ କେହି ସ୍ପଷ୍ଟରୂପେ କହିବାର ସେ ଶୁଣିବାକୁ ପାଇଲେ ଯେ, "ଆରେ ! ମୁଁ ଜଣେ ନିର୍ଦ୍ଦୋଷ ନିରପରାଧ ତପସ୍ୱୀ ; ମୁଁ କାହାର କି ଅନିଷ୍ଟ କରିଥିଲି ଯେ, ସେ ଏପରିଭାବରେ ମୋତେ ନିହତ କଲେ ? ଏଣିକି ମୋର ବୃଦ୍ଧ ଅସହାୟ ମାତା-ପିତାଙ୍କର କିଏ ସେବା କରିବ ? କିଏ ସେମାନଙ୍କର ଖାଇବାପିଇବା କଥା ବୁଝିବ ।" ଏହି ଦୟନୀୟ କରୁଣ ବାଣୀ ଶୁଣିବାକ୍ଷଣି ଦଶରଥଙ୍କ ହୃଦୟ ବ୍ୟଥିତ ହୋଇଉଠିଲା ; ସେ କିଂକର୍ତ୍ତବ୍ୟ-ବିମୂଢ଼ ହୋଇଗଲେ । ବ୍ୟସ୍ତ ହୋଇ ସେ ନଦୀକୂଳକୁ ଧାଇଁଯାଇ ଦେଖିଲେ ଯେ, ଜନୈକ ଜଟାଧାରୀ ତପସ୍ୱୀ ରକ୍ତାକ୍ତ ଅବସ୍ଥାରେ ଛଟପଟ ହେଉଛନ୍ତି । ଦଶରଥ ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କରିବାରୁ ଋଷି କହିଲେ, "ମୋର ଅନ୍ଧ ପିତାମାତା ତୃଷାର୍ତ୍ତ ; ତେଣୁ ମୁଁ ସେମାନଙ୍କ ତୃଷା ନିବାରଣ ଲାଗି ପାଣି ନେବାକୁ ଆସିଥିଲି । ମାଠିଆରେ ପାଣି ଭର୍ତ୍ତି ହେବାବେଳେ ଯେଉଁ ଶବ୍ଦ ହେଲା, ତାହା ଶୁଣି ଆପଣ ତୀର ନିକ୍ଷେପ କଲେ । ମୋର ମାତାପିତା ମୋ ବାଟ ଗ୍ରହିଁ ବସିଥିବେ । ଶୀଘ୍ର ଯାଇ ସେମାନଙ୍କୁ ଏହି ବୃତ୍ତାନ୍ତ ଜଣାଇଦିଅନ୍ତୁ । ସେମାନେ ଯେପରି ଆପଣଙ୍କୁ ଅଭିଶାପ ନ ଦିଅନ୍ତି, ସେଥିନିମନ୍ତେ ତାଙ୍କୁ ଯଥାସାଧ୍ୟ ପ୍ରସନ୍ନ କରନ୍ତୁ । ମୋ ଦେହରୁ ତୀର ବାହାର କରିଦିଅନ୍ତୁ । ମୋତେ ବହୁତ କଷ୍ଟ ହେଉଛି । ଆପଣଙ୍କୁ ବ୍ରହ୍ମହତ୍ୟା ପାପ ଲାଗିବ ନାହିଁ ; କାରଣ ମୁଁ ହେଉଛି ଜଣେ ବୈଶ୍ୟ ଓ ମୋର ନାମ ଶ୍ରବଣକୁମାର ।" ଏହା ଶୁଣି ମହାରାଜ ଦଶରଥ ତାଙ୍କ ଦେହରୁ ତୀର କାଢ଼ିଆଣିଲେ ଏବଂ ତୀର

ବାହାରିଆସିବା ପରେ ପରେ ଶ୍ରବଣଙ୍କର ପ୍ରାଣବାୟୁ ଉଡିଗଲା । ରାଜା ଦଶରଥ ଜଳ ନେଇ ଶ୍ରବଣକୁମାରଙ୍କର ମାତାପିତାଙ୍କ ନିକଟକୁ ଗଲେ । ସେମାନେ ପୁତ୍ରଙ୍କୁ ଅପେକ୍ଷା କରି ରହିଥିଲେ । ପାଦଶବ୍ଦ ଶୁଣି ସେମାନେ ବିଳମ୍ବର କାରଣ ପଚ୍ଚାରିଲେ । ଦଶରଥ ବଡ଼ ବିନୀତଭାବରେ ନିଜର ପରିଚୟ ପ୍ରଦାନ କରି ସେମାନଙ୍କୁ ସକଳ ବୃତ୍ତାନ୍ତ କହିଲେ ଏବଂ ପାଣି ପିଇବାକୁ ପ୍ରାର୍ଥନା କଲେ । ବୃଦ୍ଧଦମ୍ପତି ଏକଥା ଶୁଣି ପ୍ରଥମେ ତ ମୂର୍ଚ୍ଛିତ ହୋଇଗଲେ ; ପରେ ଚେତା ଫେରିପାଇ କହିବାକୁ ଲାଗିଲେ, "ରାଜନ୍ ! ଆପଣ କରିଥିବା ଏହି ଦୁଷ୍କର୍ମ ଆପଣ ନିଜେ ଆସି ଯଦି ଆମକୁ କହି ନ ଥାନ୍ତେ, ତେବେ ଆପଣଙ୍କର ମସ୍ତକ ସହସ୍ର ଖଣ୍ଡ ହୋଇଯାଇ ଥାଆନ୍ତା । ଆପଣ ଅବଶ୍ୟ ଭୁଲବଶତଃ ଏ କାର୍ଯ୍ୟ କରିଛନ୍ତି ; ଯଦି ଜାଣିଶୁଣି କରିଥାନ୍ତେ, ତେବେ ସକଳ ରଘୁବଂଶ ନଷ୍ଟ ହୋଇଯାଇ ଥାଆନ୍ତା । ବର୍ତ୍ତମାନ ଆମ ଦୁହିଁଙ୍କୁ ଆମ ପୁତ୍ର ପଡ଼ିଥିବା ସ୍ଥାନକୁ ନେଇଯାଆନ୍ତୁ ।" ଦଶରଥ ସେ ଦୁହିଁଙ୍କୁ ସେଠାକୁ ନେଇଗଲେ । ସେମାନେ ପୁତ୍ରଙ୍କ ଶରୀରକୁ ସ୍ପର୍ଶ କରି ବାଡେଇକଚ୍ଚଡି ହୋଇ କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲେ । ଋଷି ବଡ଼ ବ୍ୟଥିତ ହୃଦୟରେ ମୁମୂର୍ଷ ଅବସ୍ଥାରେ କହିଲେ, "ଦଶରଥ ! ଆଜି ମୁଁ ଯେପରି ପୁତ୍ର ବିୟୋଗଜନିତ ଶୋକ ଯୋଗୁ ମୃତ୍ୟୁବରଣ କରୁଛି, ତୁମର ଠିକ୍ ଏହିପରି ମୃତ୍ୟୁ ହିଁ ଘଟିବ ।" ଏତିକି କହିଦେଇ ସେ ଦୁହେଁ ପରଲୋକ ଗମନ କଲେ । ତା'ପରେ ରାଜା ଦଶରଥ ପୁତ୍ରେଷ୍ଟି ଯଜ୍ଞ କଲେ ଓ ପରିଣାମସ୍ୱରୂପ ଶ୍ରୀରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ– ଏହି ଚାରିପୁତ୍ର ତାଙ୍କର କୋଳମଣ୍ଡନ କଲେ । ସମୟକ୍ରମେ ଶ୍ରୀରାମଙ୍କର ବନବାସ ହେଲା ଏବଂ ଏହି ପୁତ୍ରବିୟୋଗ ହେତୁ ହିଁ ରାଜା ଦଶରଥଙ୍କର ମୃତ୍ୟୁ ଘଟିଲା । ଏହି ବୃତ୍ତାନ୍ତ ବାଲ୍ମୀକି ରାମାୟଣ ଅଯୋଧ୍ୟାକାଣ୍ଡର ୬୩ତମ ସର୍ଗରେ ବର୍ଣ୍ଣିତ ହୋଇଛି । ଏଥିରୁ ପ୍ରମାଣିତ ହୁଏ ଯେ, ରାଜାଙ୍କୁ ଦଣ୍ଡ ଅବଶ୍ୟ ମିଳିଲା ; କିନ୍ତୁ ସେହି ଦଣ୍ଡ ବାସ୍ତବିକ ଖୁବ୍ ଅଳ୍ପ । ପୁତ୍ରଙ୍କର କେବଳ ବନବାସ ହୋଇଗଲାମାତ୍ର ; କିନ୍ତୁ ଶ୍ରବଣକୁମାରଙ୍କ ସଦୃଶ ତାଙ୍କର ଚିରବିୟୋଗ ହୋଇ ନ ଥିଲା । ଆମ ବୁଝିବାରେ ଯଦି ରାଜା ଦଶରଥ ବିଶେଷ ଚେଷ୍ଟା କରିଥାଆନ୍ତେ, ତେବେ ସମ୍ଭବତଃ ଏହି ଦଣ୍ଡ ମଧ୍ୟ କ୍ଷମଣୀୟ ହୋଇ ପାରିଥାଆନ୍ତା । ରାଜାଙ୍କର ବ୍ୟାକୁଳ ଅବସ୍ଥା ଦେଖି ଶ୍ରବଣ ତ ନିଜ ଆଡୁ ତାଙ୍କୁ କ୍ଷମା କରିଦେଲେ ଏବଂ ତାଙ୍କ ମାତାପିତାଙ୍କୁ ବୁଝାବୁଝି କରାଇ ସାନ୍ତ୍ୱନା ପ୍ରଦାନ କରିବାପାଇଁ ପଠାଇଦେଲେ । ଏହାଫଳରେ ଯଦି ଶ୍ରବଣଙ୍କର ମାତାପିତାଙ୍କର ବିଶେଷ ଦୟା ହୋଇଯାଇ ଥାଆନ୍ତା, ତେବେ ଦଶରଥ ପୂରା ରିହାତି ପାଇପାରି ଥାଆନ୍ତେ । ସେ ଯେତିକି ଚେଷ୍ଟା କଲେ, ସେତିକି କାର୍ଯ୍ୟ ସାଧିତ ହେଲା । ଚେଷ୍ଟା କରିବା ବି ହେଉଛି ପ୍ରାୟଶ୍ଚିତ ।

ସମ୍ଭବତଃ, ମହାରାଜ ଦଶରଥ ସେତେବେଳେ ଯଦି ପରମେଶ୍ୱରଙ୍କ ନିକଟରେ ବିଶେଷ ପ୍ରାର୍ଥନା କରିଥାନ୍ତେ, ତା'ହେଲେ ହୁଏତ ଈଶ୍ୱରଙ୍କ ଇଚ୍ଛାରେ ଶ୍ରବଣକୁମାରଙ୍କ ପିତାଙ୍କ ବୁଦ୍ଧିରେ ପବିତ୍ରତା ଓ ଦୟାର ସଞ୍ଚାର ହୋଇ ପାରିଥାଆନ୍ତା ଏବଂ ସେ ଦଶରଥଙ୍କୁ କ୍ଷମା କରିଦେଇ ପାରିଥାଆନ୍ତେ । ଯଦି ଏପରି ହୁଅନ୍ତା, ତେବେ ଈଶ୍ୱରଙ୍କ ନ୍ୟାୟରେ କୌଣସି ଦୋଷ ଥିବା ଭଳି ପ୍ରତୀତ ହୁଅନ୍ତା ନାହିଁ । ତାତ୍ପର୍ଯ୍ୟ ହେଉଛି ଏହି ଯେ, ମନୁଷ୍ୟ ଯେତେ ବଡ଼ ଅପରାଧ କରିଥାଉ ନା କାହିଁକି, ଈଶ୍ୱରଙ୍କ ଶରଣ ଗ୍ରହଣ କରି ତଦନୁକୂଳ ପ୍ରାୟଶ୍ଚିତାଦି ଉପାୟ ଅବଲମ୍ବନ କରିବାଦ୍ୱାରା ବିନା ଭୋଗରେ ତା'ର ସେହି ପାପ ଈଶ୍ୱରଙ୍କ ଦୟାରୁ କ୍ଷମଣୀୟ ହୋଇପାରେ । ପ୍ରାୟଶ୍ଚିତ ଆଦି ଉପାୟଦ୍ୱାରା ମଧ୍ୟ ପାପ ଖଣ୍ଡନ ହୋଇଯାଏ ; କାରଣ ପ୍ରାୟଶ୍ଚିତ ମଧ୍ୟ ଗୋଟିଏ ପ୍ରକାର ଦଣ୍ଡଭୋଗ ସଙ୍ଗେ ସମାନ ।

ଅବଶ୍ୟ ଆଜିକାଲିର ଆଇନ-କାନୁନରେ ଜାଣିଶୁଣି ଖରାପ ଉଦ୍ଦେଶ୍ୟରେ, ମନ୍ଦ ଅଭିପ୍ରାୟରେ କରାଯାଉଥିବା ହତ୍ୟା ନିମନ୍ତେ ଦୟାର ଏଭଳି ପ୍ରୟୋଗ ମିଳିପାରିବ ନାହିଁ, ଯାହାର ଉଦାହରଣ ଦେଇ ଈଶ୍ୱରଙ୍କ ଦୟାକୁ ବୁଝାଇ ଦିଆଯାଇ ପାରିବ ; କିନ୍ତୁ ସମସ୍ତଙ୍କୁ ଏତିକି ମାନିବାକୁ ହେବ ଯେ, ଉପଯୁକ୍ତ ନ୍ୟାୟକାରୀ, ପ୍ରଜାହିତୈଷୀ ଶାସନକର୍ତ୍ତାଙ୍କର ଉଦ୍ଦେଶ୍ୟ ମଧ୍ୟ ହେଉଛି ଦଣ୍ଡବିଧାନ ନିମନ୍ତେ ଆଇନ ପ୍ରଣୟନ କରିବା ଏବଂ ତଦନୁସାରେ ଦଣ୍ଡ ଦେବାରେ ଅପରାଧୀଙ୍କୁ ଦୟା କରିବା । ନ୍ୟାୟବାନ୍ ଶାସନକର୍ତ୍ତା ଅପରାଧୀଙ୍କୁ ଦଣ୍ଡ ଦେଇ ତାଙ୍କୁ ସମୁଚିତ ଶିକ୍ଷା ଦେବାକୁ ଏବଂ ତାଙ୍କର ସଂଶୋଧନ କରିବାକୁ ଚାହାଁନ୍ତି; ଦ୍ୱେଷବଶତଃ ତାଙ୍କୁ ଦୁଃଖକଷ୍ଟ ଦେବାକୁ କିମ୍ବା ଅଯଥା ତାଙ୍କୁ ହତ୍ୟା କରିବାକୁ ଚାହାଁନ୍ତି ନାହିଁ । ଶତ୍ରୁଭାବାପନ୍ନ ଓ ପ୍ରତିହିଂସାପରାୟଣ ଲୋକମାନଙ୍କର ଉଦ୍ଦେଶ୍ୟ ହିଁ ନରହତ୍ୟା ହୋଇପାରେ । ଏପରି ହେଲେ ବି ନ୍ୟାୟପରାୟଣ ରାଜାଙ୍କର, ନ୍ୟାୟନିଷ୍ଠ ଶାସନକର୍ତ୍ତାଙ୍କର ତୁଳନା ଈଶ୍ୱରଙ୍କ ସହିତ କଦାପି କରାଯାଇ ନ ପାରେ । ଈଶ୍ୱରଙ୍କର ବିଧାନ, ଈଶ୍ୱରଙ୍କର ନିୟମ ଦୟା, ସୌହାର୍ଦ୍ଦ୍ୟ ଓ ସର୍ବଜୀବହିତରେ ପୂର୍ଣ୍ଣ ହୋଇଥାଏ । ଆମ୍ଭେମାନେ ତା'ର କଳ୍ପନା ବି କରିପାରିବା ନାହିଁ ।

ଈଶ୍ୱରଙ୍କର ଦଣ୍ଡବିଧାନ ବର ସଦୃଶ କାର୍ଯ୍ୟ କରେ । ଈଶ୍ୱରଙ୍କର ନ୍ୟାୟବିଧାନର ବୈଶିଷ୍ଟ୍ୟ ଏହି ଯେ, ତାହାଦ୍ୱାରା ଅଭିଯୋଗକାରୀ ବ୍ୟକ୍ତି ଓ ଅଭିଯୁକ୍ତ ବ୍ୟକ୍ତି ଉଭୟେ ପରିଣାମରେ ଉପକୃତ ହୋଇଥାଆନ୍ତି ଏବଂ ଉଭୟଙ୍କର ଉଦ୍ଧାର ହୋଇଥାଏ ; ଉଭୟଙ୍କର କଲ୍ୟାଣ ସାଧିତ ହୁଏ । ପରମ ଦୟାଳୁ ପରମାତ୍ମାଙ୍କର ବିଧାନ ଅନୁସାରେ ଯେଉଁ ଅପରାଧୀ ନିଜ ଅପରାଧକୁ ନିଷ୍କପଟ ହୃଦୟରେ ସ୍ୱୀକାର କରି ଭବିଷ୍ୟତରେ ପୁନର୍ବାର ଆଉ ଅପରାଧ ନ କରିବା

ପାଇଁ ପ୍ରତିଜ୍ଞାବଦ୍ଧ ହୁଅନ୍ତି ଏବଂ ନିର୍ମଳ ଓ ସରଳ ହୃଦୟରେ ଈଶ୍ୱରଙ୍କ ଶରଣାଗତ ହୋଇ ନିଜର ସର୍ବସ୍ୱ ତଥା ନିଜକୁ ତାଙ୍କ ଶ୍ରୀଚରଣରେ ସମର୍ପଣ କରିଦିଅନ୍ତି ଏବଂ ଈଶ୍ୱରଙ୍କର କଠୋର ନିୟମକୁ, ତାଙ୍କର ପ୍ରତ୍ୟେକ ସୁବିଗ୍ରହକୁ ଆନନ୍ଦର ସହିତ ବିନା ଦ୍ୱିଧାରେ ଗ୍ରହଣ କରନ୍ତି, ତଥା ତାହାକୁ ପୁରସ୍କାର ବୋଲି ମନେକରନ୍ତି ଏବଂ ତା ସଙ୍ଗେ ସଙ୍ଗେ ନିଜକୃତ ଅପରାଧ ପାଇଁ କ୍ଷମା ନ ଗ୍ରହିଁ ଦଣ୍ଡ ଗ୍ରହଣ କରିବାରେ ଖୁସୀ ହୁଅନ୍ତି । ଏହିପରି ସରଳଭାବରେ ସର୍ବସ୍ୱ ସମର୍ପଣ କରିଦେଇଥିବା ଶରଣାଗତ ଭକ୍ତଙ୍କୁ ଭଗବାନ୍ ଅପରାଧରୁ ମୁକ୍ତ କରି ଅଭୟ ପ୍ରଦାନ କରନ୍ତି । ଏଥିରୁ ଦୟାଳୁ ଈଶ୍ୱରଙ୍କର ନ୍ୟାୟ ହିଁ, ସୁବିଗ୍ରହ ହିଁ ପ୍ରମାଣିତ ହୁଏ । ଏପରି ଭାବଯୁକ୍ତ ଭକ୍ତଙ୍କୁ ଦଣ୍ଡରୁ ମୁକ୍ତ କରିବା ହିଁ ପରମାତ୍ମାଙ୍କ ରାଜ୍ୟର ଦୟା ଓ ନ୍ୟାୟପୂର୍ଣ୍ଣ ନିୟମ । ଏପରିଭାବରେ ଭଗବାନଙ୍କ ଠାରେ ଦୟା ଓ ନ୍ୟାୟ ଉଭୟ ଏକ ସଙ୍ଗରେ ରହିଥାଏ । ଗୀତାରେ ଭଗବାନ୍ ସ୍ପଷ୍ଟରୂପେ କହିଛନ୍ତି–

*ଅପି ଚେତ୍ ସୁଦୁରାଗ୍ରରୋ ଭଜତେ ମାମନନ୍ୟଭାକ୍ ।*
*ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍‌ବ୍ୟବସିତୋ ହି ସଃ ॥*
*କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।*
*କୌନ୍ତେୟ ପ୍ରତିଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ॥*
*ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।*
*ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ॥*

(୯।୩୦-୩୧, ୧୮/୬୬)

ଅର୍ଥାତ୍– 'ଯଦି କୌଣସି ଅତିଶୟ ଦୁରାଗ୍ରହୀ ମଧ୍ୟ ଅନନ୍ୟଭାବରେ ମୋର ଭକ୍ତ ହୋଇ ମୋତେ ନିରନ୍ତର ଭଜନ କରନ୍ତି, ତେବେ ତାଙ୍କୁ ବି ସାଧୁ ବୋଲି ଗଣାଯିବ ; କାରଣ ସେ ଯଥାର୍ଥ ନିଶ୍ଚୟ କରିଥାଆନ୍ତି ଅର୍ଥାତ୍ ସେ ଭଲରୂପେ ନିଶ୍ଚୟ କରି ନେଇଥାଆନ୍ତି ଯେ, ପରମେଶ୍ୱରଙ୍କ ଭଜନ ସମାନ ଆଉ କିଛି ନାହିଁ । ତେଣୁ ସେ ଶୀଘ୍ର ଧର୍ମାତ୍ମା ହୋଇଯାଆନ୍ତି ଏବଂ ଚିରନ୍ତନ ଶାନ୍ତିପ୍ରାପ୍ତ ହୋଇଯାଆନ୍ତି । ହେ ଅର୍ଜୁନ ! ତୁମେ ଏହା ନିଶ୍ଚିତ ସତ୍ୟ ବୋଲି ଜାଣ ଯେ, ମୋର ଭକ୍ତଙ୍କର କଦାପି ବିନାଶ ହୁଏ ନାହିଁ । ଏଣୁ ସକଳ କର୍ମର ଆଶ୍ରୟ ତ୍ୟାଗ କରି, ତୁମର ସକଳ ସମସ୍ୟା ମୋ ଉପରେ ଛାଡ଼ିଦେଇ ଏକମାତ୍ର ମୋର ଅର୍ଥାତ୍ ସଚ୍ଚିଦାନନ୍ଦସ୍ୱରୂପ ସର୍ବାଧାର ପରମେଶ୍ୱରଙ୍କର ଅନନ୍ୟ ଶରଣକୁ ଆସିଯାଅ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି ; ତୁମେ ଶୋକ କର ନାହିଁ ।'

***ହରି ଓଁ ତତ୍ ସତ୍***

~~ O ~~